॥ ଶ୍ରୀହରିଃ ॥ 1201

'ଆଦର୍ଶ ଚରିତମାଳା' ଚତୁର୍ଥ ପୁଷ୍ପ

# ମହାତ୍ମା ବିଦୁର

महात्मा विदुर ( ओड़िआ )



ଗୀତାପ୍ରେସ, ଗୋରଖପୁର

॥ ଶ୍ରୀହରିଃ ॥

'ଆଦର୍ଶ ଚରିତମାଳା' ଚତୁର୍ଥ ପୁଷ୍ପ

# ମହାତ୍ମା ବିଦୁର

**महात्मा विदुर ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ଲେଖକ—ଶ୍ରୀ ଶାନ୍ତନୁବିହାରୀ ଦ୍ୱିବେଦୀ
ସମ୍ପାଦକ—ହନୁମାନପ୍ରସାଦ ପୋଦ୍ଦାର
ଭାଷାନ୍ତର—ସ୍ୱାମୀ ତ୍ୟାଗସ୍ୱରୂପାନନ୍ଦ ସରସ୍ୱତୀ

ଶ୍ରୀହରିଃ

# ନମ୍ର ନିବେଦନ

ମହାତ୍ମା ବିଦୁରଙ୍କର ଏହି ଚରିତ 'ଆଦର୍ଶ ଚରିତମାଳାର 'ଚତୁର୍ଥ ପୁଷ୍ପ' । ଧର୍ମାବତାର ବିଦୁରଙ୍କର ସମସ୍ତ ଜୀବନ ଲୋକ-କଲ୍ୟାଣ ସାଧନାରେ ବିତିଥିଲା । ତାଙ୍କ ସଦାଗ୍ରର ଓ ଭଗବତ୍ ପ୍ରେମ ସର୍ବଥା ପ୍ରଶଂସନୀୟ । ସେ ପାଣ୍ଡବମାନଙ୍କର ପ୍ରକୃତ ହିତୈଷୀ ଏବଂ ସଖା ଥିଲେ ଏବଂ ବଡ଼ ସ୍ପଷ୍ଟବାଦୀ ଓ ନୀତି-ନିପୁଣ ଥିଲେ । ମହାଭାରତ ତଥା ଶ୍ରୀମଦ୍‌ଭାଗବତର ଆଧାର ଉପରେ ପଣ୍ଡିତ ଶ୍ରୀ ଶାନ୍ତନୁବିହାରୀ ଦ୍ବିବେଦୀ ଏହି ଚରିତ୍ରକୁ ସରଳ, ସୁନ୍ଦର ଏବଂ ଓଜସ୍ବିନୀ ଭାଷାରେ ବର୍ଣ୍ଣନା କରିଛନ୍ତି । ପୁସ୍ତକରେ ବିଦୁରଙ୍କ ଜୀବନର ପ୍ରମୁଖ ଘଟନାବଳୀର ଉଲ୍ଲେଖ ତ ହୋଇଛି, ସବୁଠାରୁ ସୁନ୍ଦର କଥା ଏହି ଯେ ବିଦ୍ବାନ୍ ଲେଖକ ମହାଶୟ ବିଦୁରଙ୍କ ଧର୍ମନୀତିର ବହୁତ ଉତ୍ତମ ରୂପାୟନ କରିଛନ୍ତି, ଯାହାଦ୍ବାରା ପୁସ୍ତକଟି ସମସ୍ତଙ୍କ ପାଇଁ ଉପଯୋଗୀ ହୋଇପାରିଛି । ଆଶା ଓ ବିଶ୍ବାସ, ପାଠକମାନେ ଏଥିରୁ ଯଥେଷ୍ଟ ଲାଭବାନ୍ ହେବେ ।

ବିନୀତ—

**ସମ୍ପାଦକ**

॥ ଶ୍ରୀହରିଃ ଶରଣମ୍ ॥

# ମହାତ୍ମା ବିଦୁର

## ୧

ଧର୍ମର ଗତି ବଡ଼ ଗହନ । କେଉଁ କର୍ମ ଧର୍ମ ଏବଂ କେଉଁ କର୍ମ ଅଧର୍ମ, ଏହାର ନିର୍ଣ୍ଣୟ ସାମାନ୍ୟ ବୁଦ୍ଧିରେ କରି ହେବ ନାହିଁ । ଧର୍ମ ଓ ଅଧର୍ମର ତତ୍ତ୍ୱ ତ ସ୍ୱୟଂ ଭଗବାନ୍ ଜାଣନ୍ତି ଅଥବା ଭଗବାନଙ୍କ ସାକ୍ଷାତ୍‌କାର କରୁଥିବା ମହର୍ଷିମାନେ ଜାଣନ୍ତି । ଭଗବାନଙ୍କର ସେହି ରୂପ ଯାହାଦ୍ୱାରା ସେ ପ୍ରାଣୀମାନଙ୍କ ହୃଦୟରେ ସ୍ଥିତ ହୋଇ ଜଗତ୍‌କୁ ଏବଂ ପ୍ରାଣୀମାନଙ୍କୁ ଧାରଣ କରନ୍ତି, ତାହାକୁ ଧର୍ମନାମରେ କୁହାଯାଇଛି । ଧର୍ମର ଆଧାର ଉପରେ ହିଁ ସମସ୍ତଙ୍କ ସ୍ଥିତି, ଧର୍ମଦ୍ୱାରା ସବୁକିଛି ପ୍ରତିଷ୍ଠିତ, ଏଣୁ ଧର୍ମକୁ ହିଁ ପରମ ତତ୍ତ୍ୱ କହନ୍ତି ।*

ଭାବ-ଭେଦରେ ଧର୍ମର ତିନିରୂପ ହୁଏ—ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ । ଧର୍ମର ଆଧ୍ୟାତ୍ମିକ ରୂପ ସ୍ୱୟଂ ଭଗବାନ୍ ଅଟନ୍ତି । ଆଧିଦୈବିକ ରୂପ ଧର୍ମରାଜ ବା ଯମରାଜ ଅଟନ୍ତି, ଯେ ନିଜ ଲୋକରେ ରହି ପୁଣ୍ୟାତ୍ମା ଓ ପାପାତ୍ମାମାନଙ୍କ କର୍ମଫଳର ବ୍ୟବସ୍ଥା କରନ୍ତି । ତାଙ୍କୁ ଆମେ ବ୍ୟାବହାରିକ ଧର୍ମର ଅଧିଷ୍ଠାତୃ-ଦେବତା ବୋଲି କହି ପାରିବା । ଧର୍ମର ଆଧିଭୌତିକ ରୂପ ହେଉଛି ସାମାଜିକ ବ୍ୟବସ୍ଥା; ଯାହା ଶାସ୍ତ୍ର ଏବଂ ଶାସ୍ତ୍ରତତ୍ତ୍ୱଦର୍ଶୀ ଋଷିମାନଙ୍କ ଦ୍ୱାରା ନିର୍ମିତ ହୋଇଛି । ତାହା ଦେଶ, କାଳ, ପାତ୍ର, ଶକ୍ତି, ବୟସ ଆଦି ଭେଦରେ ବିଭିନ୍ନପ୍ରକାର ହୁଏ ଏବଂ ଏହି ବ୍ୟବସ୍ଥାକୁ ଯେ ଭଙ୍ଗ କରେ, ତାକୁ ଧର୍ମଦେବତା ଦଣ୍ଡ ଦିଅନ୍ତି । ଧର୍ମଦେବତାଙ୍କ ନାମାନ୍ତର ଯମରାଜ । ତାଙ୍କୁ କେତେ ସାବଧାନ ରହିବାକୁ ପଡ଼େ ଏବଂ ଟିକିଏ ତ୍ରୁଟି ହେଲେ କିପ୍ରକାରେ ସ୍ୱୟଂ ଦଣ୍ଡିତ ହେବାକୁ ପଡ଼େ, ଏହି କଥା ଆମ୍ଭେମାନେ ଖୁବ୍ କମ୍ ଜାଣିପାରିବା ।

---

* ଧର୍ମେ ସର୍ବଂ ପ୍ରତିଷ୍ଠିତମ୍ । ତସ୍ମାଦ୍ଧର୍ମଂ ପରମଂ ବଦନ୍ତି । —ଶ୍ରୁତି

ପୃଥିବୀର ନୈର୍ଋତ୍ୟ କୋଣରେ ଧର୍ମରାଜଙ୍କର ସଂଯମନୀପୁରୀ। ସେଥିରେ ଅନେକ ଯୋଜନ ପର୍ଯ୍ୟନ୍ତ ବହୁତ ସୁନ୍ଦର-ସୁନ୍ଦର ମହଲ ଅଛି। ସେଥିରେ ଧର୍ମରାଜ ନିଜର ମନ୍ତ୍ରୀ ଓ ଧାର୍ମିକ ସଭାସଦମାନଙ୍କ ସହିତ ନିବାସ କରନ୍ତି। ତାଙ୍କର ସଭାସଦମାନଙ୍କ ମଧ୍ୟରେ ଋଷି, ମହର୍ଷି, ଦେବତା ସବୁ ପ୍ରକାରର ଲୋକ ଅଛନ୍ତି। ମନୁଷ୍ୟମାନଙ୍କ ପାପ-ପୁଣ୍ୟର ହିସାବ ରଖିବାପାଇଁ ଚିତ୍ରଗୁପ୍ତ ମହାରାଜ ଅଛନ୍ତି। କାଳ, ଦିଗ, ଆକାଶ, ବାୟୁ, ଅଗ୍ନି, ସୂର୍ଯ୍ୟ ଆଦି ବହୁତ ତାଙ୍କର ଦୂତ ଅଛନ୍ତି, ଯେଉଁମାନେ ମନୁଷ୍ୟଙ୍କ ଦ୍ୱାରା ଏକାନ୍ତରେ ହେଉଥିବା କର୍ମଗୁଡ଼ିକୁ ମଧ୍ୟ ଦେଖାରଖା କରନ୍ତି ଏବଂ ଖୁବ୍ ଶୀଘ୍ର ତାଙ୍କ ପାଖରେ ସମ୍ବାଦ ପହଞ୍ଚାଇ ଦିଅନ୍ତି। ତାଙ୍କ ସଭାରେ ଚାରିଗୋଟି ଦ୍ୱାର ଅଛି। ସେଥିରୁ ତିନୋଟି ଦ୍ୱାରରେ ପୁଣ୍ୟାତ୍ମା ଲୋକଙ୍କର ପ୍ରବେଶ ହୁଏ ଏବଂ ଦକ୍ଷିଣ ଦ୍ୱାରରେ ପାପୀ ଲୋକମାନେ ଆସନ୍ତି। ସେହି ମାର୍ଗରେ ଆସିବା ପାଇଁ ପାପୀମାନଙ୍କୁ ବଡ଼ କଷ୍ଟ ଉଠାଇବାକୁ ପଡ଼େ ଏବଂ ବୈତରଣୀ ମଧ୍ୟ ଲଂଘନ କରିବାକୁ ପଡ଼େ। ସେହି ମାର୍ଗରେ ନେଇ ଆସୁଥିବା ଦୂତମାନେ ମଧ୍ୟ ବଡ଼ ଭୟଙ୍କର ଅଟନ୍ତି ଏବଂ କୁମ୍ଭୀପାକ, ରୌରବ, ଅସିପତ୍ରବନ ଆଦି ମଧ୍ୟ ସେଇ ବାଟରେ ପଡ଼େ। ସେହି ଦ୍ୱାରର ସବୁଠାରୁ ବଡ଼ ବିଶେଷତା ଏହି ଯେ, ଯେ ଏଇ ମାର୍ଗରେ ଆସେ, ତାକୁ ଧର୍ମରାଜଙ୍କର ସ୍ୱରୂପ ବଡ଼ ଭୟଙ୍କର ଦିଶେ କିନ୍ତୁ ବାସ୍ତବରେ ତ ସେ ବଡ଼ ହିଁ ସୌମ୍ୟ।

ଏହି ଧର୍ମରାଜ ଭଗବାନଙ୍କ ଏକ ସ୍ୱରୂପ, ହେଲେ ଭାଗବତଧର୍ମକୁ ଜାଣିଥିବା ବାରଜଣ ମହାତ୍ମାଙ୍କ ମଧ୍ୟରୁ ସେ ପ୍ରମୁଖ ବୋଲି ଗଣା ଯାଆନ୍ତି। ଅର୍ଥାତ୍ ସେ ଭଗବାନଙ୍କର ବହୁତ ବଡ଼ ଭକ୍ତ ଏବଂ ତାଙ୍କରି ରହସ୍ୟକୁ ଜାଣିଥିବା ଉଚ୍ଚ ଜ୍ଞାନୀ। ସେ ନିଜ ଦୂତମାନଙ୍କୁ ଭାଗବତଧର୍ମର ରହସ୍ୟ ବୁଝାଇଛନ୍ତି ଏବଂ ବାରମ୍ବାର ବୁଝାନ୍ତି ଯେ କେଉଁମାନଙ୍କୁ କେଉଁ ମାର୍ଗଦେଇ ଆଣିବା ଉଚିତ ଏବଂ କେଉଁମାନଙ୍କ ସହିତ କି ପ୍ରକାର ବ୍ୟବହାର କରିବା ଉଚିତ। ସେ ମନ, ବାଣୀ ଓ କର୍ମରେ ଭଗବାନଙ୍କ ଭକ୍ତ ଅଟନ୍ତି ତଥା ନିଜ ଦୂତମାନଙ୍କୁ ମଧ୍ୟ ଏହି କଥା ଶିକ୍ଷା ଦିଅନ୍ତି। ସେ ଥରେ କହିଥିଲେ, ମୋ ଭୟଙ୍କର ଦୂତଗଣ ! ଯେଉଁମାନଙ୍କ ଜିଭ ଭଗବାନଙ୍କ ପବିତ୍ର ଗୁଣ,

ଲୀଳା ଓ ନାମ ଗାନ କରେ ନାହିଁ, ଯାହାଙ୍କ ଚିତ୍ତ ଭଗବାନଙ୍କ ଚରଣକମଳର ସ୍ମରଣ କରେ ନାହିଁ, ଯେଉଁମାନଙ୍କ ମୁଣ୍ଡ ଭଗବାନ୍ ଓ ତାଙ୍କ ଭକ୍ତମାନଙ୍କ ଆଗରେ ଥରେ ମଧ୍ୟ ନଇଁ ଯାଏ ନାହିଁ, ଯେଉଁମାନେ ନିଜ କର୍ତ୍ତବ୍ୟପାଳନ ଦ୍ୱାରା ତାଙ୍କ ଆରାଧନା କରି ନାହାନ୍ତି ଏବଂ ଯେଉଁମାନେ ତାଙ୍କ ସତ୍‌ସ୍ୱରୂପରୁ ବିମୁଖ ଅଟନ୍ତି, ସେମାନଙ୍କୁ ତୁମେ ଭୟଙ୍କର ନରକ ରାସ୍ତାରେ ନେଇ ଆସିବ।* ଧର୍ମରାଜ କେବଳ ସେଠାକୁ ଗଲେ ହିଁ ପାପପୁଣ୍ୟର ଫଳ ଦିଅନ୍ତି ନାହିଁ, ବରଂ ଏହି ଲୋକରେ, ଏହି ଜୀବନରେ ଏଠାକାର ଲୋକମାନଙ୍କୁ ନିମିତ୍ତ କରି ମଧ୍ୟ ସେମାନଙ୍କୁ ଫଳ ଦିଅନ୍ତି।

ପ୍ରାଚୀନ କାଳରେ ମାଣ୍ଡବ୍ୟ ନାମରେ ଜଣେ ବଡ଼ ତପସ୍ୱୀ ଋଷି ଥିଲେ। ସେ ଅତି ଧର୍ମଜ୍ଞ, ପ୍ରଭାବଶାଳୀ ଓ ମୌନୀ ଥିଲେ। ସେ ନିଜ ହାତ ଉପରକୁ ଉଠାଇ ତପସ୍ୟାରେ ସଂଲଗ୍ନ ରହୁଥିଲେ। ଦିନେ କିଛି ଡାକୁ ଧନ ଲୁଟି ଋଷି ମାଣ୍ଡବ୍ୟଙ୍କ ଆଶ୍ରମ ଦେଇ ବାହାରିଲେ। ସେତିକିବେଳେ ରାଜ୍ୟର ସିପାହୀମାନେ ସେମାନଙ୍କ ପିଛା କଲେ ଏବଂ ସେମାନେ ଋଷି ଆଶ୍ରମ ପାଖରେ ଧନ ପୋତିଦେଇ ପଳାଇଗଲେ। ସିପାହୀମାନେ ଆସି ଋଷିଙ୍କୁ ପଚ୍ଚରିଲେ, 'ମହାରାଜ ! ଡାକୁମାନେ କୁଆଡ଼େ ଗଲେ?' ନିଜର ମୌନବ୍ରତ ହେତୁ ଋଷି କିଛି ଉତ୍ତର ଦେଲେ ନାହିଁ। ସିପାହୀମାନେ ଆଶ୍ରମ ଆଖପାଖ ଖୋଜାଖୋଜି କରି ଡାକୁମାନଙ୍କୁ ଧରି ପକାଇଲେ। ଧନ ମଧ୍ୟ ସେଠାରୁ ମିଳିଗଲା। ସେମାନଙ୍କ ସନ୍ଦେହ ହେଲା ଯେ ଏହି ତପସ୍ୱୀ ବୋଧହୁଏ କୌଣସି ଡାକୁ, ଏ ଜାଣିଶୁଣି ଆମ ପ୍ରଶ୍ନର ଉତ୍ତର ଦେଲା ନାହିଁ। ଏଣୁ ଏହାକୁ ମଧ୍ୟ ବାନ୍ଧି ନେଇଯିବା। ସେମାନେ ମାଣ୍ଡବ୍ୟଙ୍କୁ ଧରି ନେଲେ ଏବଂ ଡାକୁମାନଙ୍କ ସଙ୍ଗରେ ତାଙ୍କୁ ମଧ୍ୟ ରାଜାଙ୍କ ଆଗରେ ହାଜର କଲେ।

ରାଜାଙ୍କୁ ମଧ୍ୟ ସେ କୌଣସି ଉତ୍ତର ନ ଦେବାରୁ ରାଜା ତାଙ୍କୁ

---

* ଜିହ୍ୱା ନ ବକ୍ତି ଭଗବଦ୍‌ଗୁଣନାମଧେୟଂ
ଚେତଶ୍ଚ ନ ସ୍ମରତି ତଚ୍ଚରଣାରବିନ୍ଦମ୍ ।
କୃଷ୍ଣାୟ ନୋ ନମତି ଯଚ୍ଛିର ଏକଦାପି
ତାନାନୟଧ୍ୱମସତୋଽକୃତବିଷ୍ଣୁକୃତ୍ୟାନ୍ ॥

ଡାକୁ ବୋଲି ଭାବିନେଲେ ଏବଂ ଡାକୁମାନଙ୍କ ସହିତ ଶୂଳିଦଣ୍ଡ ଦେଲେ। ମାଣ୍ଡବ୍ୟ ଋଷିଙ୍କୁ ଶୂଳି ଉପରେ ଚଢ଼ାଇ ଦିଆଗଲା, ହେଲେ ଶୂଳି ତାଙ୍କ ଶରୀରକୁ ଭେଦ କରି ପାରିଲା ନାହିଁ। ସେ ବହୁଦିନ ପର୍ଯ୍ୟନ୍ତ ଶୂଳି ଉପରେ ବସି ତପସ୍ୟା କରି ଗ୍ଲିଲେ। ଅନ୍ୟ ଋଷିମାନଙ୍କୁ ଏହି ଖବର ମିଳିଲା ପରେ ସେମାନେ ପକ୍ଷୀରୂପ ଧାରଣ କରି ମାଣ୍ଡବ୍ୟ ଋଷିଙ୍କ ପାଖକୁ ଆସିବାକୁ ଲାଗିଲେ ଏବଂ ପଗ୍ଗରିଲେ ଯେ ତୁମକୁ କେଉଁ ପାପରୁ ଏହି ଦଣ୍ଡ ମିଳିଛି । ମାଣ୍ଡବ୍ୟ ଋଷି ମଧ୍ୟ ଚିନ୍ତା କରିବାକୁ ଲାଗିଲେ ଯେ ମୋତେ କେଉଁ ପାପରୁ ଏ ଦଣ୍ଡ ମିଳିଛି । କିଛି ଦିନ ପରେ ରାଜାଙ୍କୁ ଖବର ମିଳିଲା ଯେ ଶୂଳି ଦିଆଯାଇଥିଲେ ମଧ୍ୟ ଗୋଟିଏ ଡାକୁର ମୃତ୍ୟୁ ହୋଇନାହିଁ, ସେ ଏବେ ମଧ୍ୟ ଜୀବିତ । ସେ ଜାଣିପାରିଲେ ଯେ ସେ କୌଣସି ଋଷି । ରାଜା ଖୁବ୍ ପ୍ରାର୍ଥନା କଲେ, ତାଙ୍କୁ ଶୂଳି ଉପରୁ ଉଠାଇ ଆଣିଲେ; ହେଲେ ଶୂଳିର ଛୋଟ ଅଣି (ମୁନ) ତାଙ୍କ ଶରୀରରେ ଲାଗି ରହିଲା, ତାହା ଆଉ ଛାଡ଼ିଲା ନାହିଁ । ଏଣୁ ତାଙ୍କର ନାମ ହେଲା ଅଣିମାଣ୍ଡବ୍ୟ।

ମାଣ୍ଡବ୍ୟ ଋଷି ଦିନେ ଧର୍ମରାଜଙ୍କ ସଭାରେ ଉପସ୍ଥିତ ହେଲେ । ସେ କହିଲେ ମୁଁ ଏପରି କେଉଁ ପାପ କରିଥିଲି ଯେ, ମୋତେ ଶୂଳି ଉପରେ ଚଢ଼ିବାକୁ ପଡ଼ିଲା? ଧର୍ମରାଜ ! ଯଦି ତୁମେ ଏହାର ଠିକ୍ ଠିକ୍ ଉତ୍ତର ନଦେବ ତେବେ ତୁମକୁ ନିଜର ଏହି କର୍ମଫଳ ଭୋଗ କରିବାକୁ ପଡ଼ିବ। ଧର୍ମରାଜ କହିଲେ—ତପୋଧନ ! ଆପଣ ପିଲାବେଳେ ଘାସ ଦ୍ୱାରା ଗୋଟିଏ ଝିଣ୍ଟିକାକୁ କଣାକରି ଉଡ଼ାଇ ଥିଲେ, ସେହି ପାପର ଫଳ ଆପଣଙ୍କୁ ଭୋଗିବାକୁ ପଡ଼ିଲା। ଛୋଟିଆ ପାପ ମଧ୍ୟ ଛୋଟ ହୁଏ ନାହିଁ। ପାପ ସର୍ବଦା ବଡ଼ ହିଁ ହୁଏ। ମାଣ୍ଡବ୍ୟ କହିଲେ—'ଧର୍ମରାଜ ! ସେହି ସମୟରେ ମୁଁ ଛୋଟିଆ ବାଳକ ଥିଲି, ମୋତେ ପାପ-ପୁଣ୍ୟର କିଛି ଜ୍ଞାନ ନଥିଲା, ସେହି ଛୋଟ ପାପର ଏତେ ବଡ଼ ଦଣ୍ଡ ଯେ ବ୍ରାହ୍ମଣକୁ ଶୂଳି ଉପରେ ଚଢ଼ାଇ ଦିଆଯିବ। ଏହା କଦାପି ଉଚିତ ହୋଇ ପାରେନା। ଏଣୁ ମୁଁ ତୁମକୁ ଶାପ ଦେଉଛି ଯେ ତୁମେ ମର୍ତ୍ତ୍ୟଲୋକରେ ଶହେ ବର୍ଷ ପର୍ଯ୍ୟନ୍ତ ଶୂଦ୍ର ହୋଇ ରହିବ।' ଧର୍ମରାଜ ପ୍ରସନ୍ନତାପୂର୍ବକ ଋଷିଙ୍କର ଶାପ ସ୍ୱୀକାର କଲେ।

ସେହି ସମୟରେ ପୃଥିବୀରେ ଦୈତ୍ୟମାନଙ୍କ ସଂଖ୍ୟା ବଢ଼ି ଯାଇଥିଲା । କ୍ଷତ୍ରିୟମାନଙ୍କ ରୂପରେ ଜନ୍ମ ନେଇ ସେମାନେ ପୃଥିବୀକୁ ବ୍ୟାକୁଳ କରି ଦେଇଥିଲେ । ସେମାନଙ୍କୁ ଦମନ କରିବା ପାଇଁ ପ୍ରାୟଃ ସମସ୍ତ ଦେବତା ନିଜ-ନିଜ ଅଂଶରେ ଅବତୀର୍ଣ୍ଣ ହୋଇଥିଲେ । ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ ଧରାରେ ଅବତାର ଗ୍ରହଣ କରିବାର ଥିଲା । ଏପରି ସମୟରେ ଧର୍ମରାଜଙ୍କ ଅବତାର ନେବାର ଆବଶ୍ୟକତା ମଧ୍ୟ ଥିଲା । ମାଣ୍ଡବ୍ୟଙ୍କ ଶାପ ନିମିତ୍ତ ହୋଇଗଲା । ଦେବତାମାନଙ୍କ ଶରୀର-ଧାରଣର ଶକ୍ତି ରହିଛି । ସେମାନେ ଏକ ସଙ୍ଗରେ ଅନେକ ସ୍ଥାନରେ ଅନେକ ରୂପରେ ପ୍ରକଟ ହୋଇ ପାରନ୍ତି ଏବଂ ଅନେକ ଯଜ୍ଞରେ ଭାଗନେଇ ପାରନ୍ତି । ଧର୍ମରାଜ ମଧ୍ୟ ନିଜକୁ ଦୁଇରୂପରେ ପ୍ରକଟ କଲେ । ଗୋଟିଏ ବିଦୁର ଏବଂ ଅନ୍ୟଟି ଯୁଧିଷ୍ଠିର । ବିଦୁରଙ୍କ ଜନ୍ମ ପ୍ରସଙ୍ଗରେ ଦୁହିଁଙ୍କର ଏକତା ସ୍ପଷ୍ଟ କରାଯାଇ ପାରିବ । ଏଠାରେ କେବଳ ବିଦୁରଙ୍କ ପ୍ରସଙ୍ଗ ଅଛି ।

ସତ୍ୟବତୀ ବେଦବ୍ୟାସଙ୍କୁ ପ୍ରାର୍ଥନା କଲେ, ପୁତ୍ର ! ତୁମ ପରି ତପସ୍ୱୀ ମହାତ୍ମା ଥାଉଁ ଥାଉଁ ଆମ କୁରୁବଂଶ ବୁଡ଼ିଯିବାକୁ ଯାଉଛି । ଭୀଷ୍ମ ବ୍ରହ୍ମଚାରୀ, ବିଚିତ୍ରବୀର୍ଯ୍ୟ ମରିଗଲା, ବର୍ତ୍ତମାନ ଆମ ବଂଶ କିପରି ଚାଲିବ? ତୁମେ ନିଜ ତପସ୍ୟା ପ୍ରଭାବରେ ଆମ ବଂଶକୁ ରକ୍ଷା କର । ବ୍ୟାସଦେବ ନିଜ ମାତାଙ୍କ ଆଗ୍ରହ ସ୍ୱୀକାର କଲେ ଏବଂ କହିଲେ 'ଅମ୍ବିକା ଓ ଅମ୍ବାଳିକା ଯଦି ମୋ ଆଗରେ ବସ୍ତ୍ରହୀନ ହୋଇ ଚାଲିଯିବେ ତେବେ ମୋର ଦୃଷ୍ଟି ଶକ୍ତିଦ୍ୱାରା ସେମାନଙ୍କୁ ସନ୍ତାନ ଲାଭ ହୋଇ ପାରିବ ।' ସତ୍ୟବତୀ ସେ ଦୁହିଁଙ୍କୁ ବାରମ୍ବାର ବ୍ୟାସଦେବଙ୍କ ଆଗକୁ ପଠାଇଲେ; ହେଲେ ଦୁହେଁ ବଡ଼ ସଙ୍କୋଚରେ ତାଙ୍କ ଆଗକୁ ଗଲେ । ଜଣେ ନିଜର ଆଖି ବନ୍ଦ କରି ଦେଇଥିଲା, ଅନ୍ୟ ଜଣକ ଭୟରେ ଶେତା ପଡ଼ି ଯାଇଥିଲା । ବ୍ୟାସ ସେମାନଙ୍କୁ ଦେଖିଲେ ଏବଂ କହିଲେ ଯେ 'ପ୍ରଥମର ଯେଉଁ ପୁତ୍ର ହେବ, ସେ ଅନ୍ଧ ହେବ, ଏବଂ ଦ୍ୱିତୀୟର ଯେଉଁ ପୁତ୍ର ହେବ ସେ ପାଣ୍ଡୁ-ବର୍ଣ୍ଣର ହେବ ।' ସେମାନେ ଧୃତରାଷ୍ଟ୍ର ଓ ପାଣ୍ଡୁ ହେଲେ, ଯେଉଁମାନଙ୍କ ବଂଶଜ ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିର ଆଦି ଥିଲେ ।

ସତ୍ୟବତୀଙ୍କର ଏଥିରେ ସନ୍ତୋଷ ହେଲା ନାହିଁ । ସେ ପୁଣି ଅମ୍ବିକାକୁ

କହିଲେ ଯେ ଗୋଟିଏ ସର୍ବଗୁଣ ସମ୍ପନ୍ନ ପୁତ୍ର ଜନ୍ମ କର। ଅମ୍ବିକା ତାଙ୍କ ଆଗରେ 'ହଁ' କରିଦେଲେ; କିନ୍ତୁ ବ୍ୟାସଦେବଙ୍କ ଆଗକୁ ଯିବାକୁ ତାଙ୍କର ସାହସ ହେଲା ନାହିଁ। ସେ ନିଜର ପରମସୁନ୍ଦରୀ ଦାସୀକୁ ବ୍ୟାସଦେବଙ୍କ ଆଗକୁ ପଠାଇ ଦେଲେ। ସେହି ଦାସୀ ସଙ୍କୋଚରହିତ ହୋଇ ବ୍ୟାସଦେବଙ୍କ ଆଗକୁ ଚ୍ଛାଲିଗଲା ଓ ତାଙ୍କରି କୃପାଦୃଷ୍ଟିଦ୍ୱାରା ତାହାର ଗର୍ଭ ରହିଗଲା। ବ୍ୟାସଦେବ ସେହି ଦିନଠାରୁ ତାହାର ଦାସୀଭାବ କଟି ଯିବାର ବର ଦେଲେ ଏବଂ କହିଲେ ଯେ 'ତୁମର ଗର୍ଭରୁ ଗୋଟିଏ ଧାର୍ମିକ ପୁତ୍ର ଉତ୍ପନ୍ନ ହେବ।' ଭଗବାନ ବ୍ୟାସଦେବଙ୍କ ବାଣୀ କ'ଣ ଅନ୍ୟଥା ହୋଇପାରେ ? ସମୟ କ୍ରମେ ଧର୍ମରାଜ ଏହି ଦାସୀର ଗର୍ଭରୁ ବିଦୁର ରୂପରେ ଜନ୍ମ ଗ୍ରହଣ କଲେ।

ଧର୍ମାବତାର ବିଦୁର ମନୁଷ୍ୟ ହେଲେ ମଧ୍ୟ ନିଜର ଦେବତ୍ୱ ଜ୍ଞାନକୁ ଭୁଲି ନ ଥିଲେ। ପରନ୍ତୁ ସେ କେବେ ନିଜକୁ ଦେବତା ରୂପରେ ପ୍ରକଟ କରି ନ ଥିଲେ। ସଦା ମନୁଷ୍ୟ ଧର୍ମର ପାଳନ କରୁଥିଲେ। ପିଲାଟି ଦିନରୁ ବଡ଼ ଗମ୍ଭୀର ଥିଲେ। ବ୍ୟାସଦେବ, ଭୀଷ୍ମପିତାମହ ଆଦି ଗୁରୁଜନମାନଙ୍କର ସେବାରେ ହିଁ ପ୍ରାୟ ଲାଗି ରହୁଥିଲେ। ଏତେ ମୌନ ରହୁଥିଲେ ଯେପରି ସେ କିଛି ଜାଣନ୍ତି ନାହିଁ। ସେ ନିରନ୍ତର ଭଗବଦ୍‌ଭଜନରେ ଲାଗି ରହୁଥିଲେ ଏବଂ ଅବକାଶ ପାଇଲେ ଧ୍ୟାନସ୍ଥ ହୋଇ ଯାଉଥିଲେ। ତାଙ୍କ ଜୀବନରେ କେବେ ବହିର୍ମୁଖତା ଆସି ନ ଥିଲା। ତାଙ୍କର ସେବା, ତାଙ୍କର ସଦାଚ୍ଛର ଏବଂ ତାଙ୍କ ଭଗବତ୍‌ପ୍ରେମରେ ସମସ୍ତେ ପ୍ରସନ୍ନ ଥିଲେ। ବଡ଼ ଭାଇ ଧୃତରାଷ୍ଟ୍ରଙ୍କର ସେ ଆଖି ହିଁ ଥିଲେ। ଧୃତରାଷ୍ଟ୍ର କୌଣସି କାର୍ଯ୍ୟ ତାଙ୍କ ବିନା ପରାମର୍ଶରେ କରୁ ନ ଥିଲେ। ଭୀଷ୍ମପିତାମହ ପାଣ୍ଡୁ ଓ ଧୃତରାଷ୍ଟ୍ରଙ୍କୁ ବହୁତ ସମ୍ପତ୍ତି ଦେଇଥିଲେ। ସେ ବିଦୁରଙ୍କୁ ଧନ ନେବାପାଇଁ କହିବାବେଳେ ସେ ସ୍ପଷ୍ଟ ଅସ୍ୱୀକାର କରିଦେଲେ। ତାଙ୍କ ମତରେ ଧନର କୌଣସି ମୂଲ୍ୟ ନ ଥିଲା। ସଂସାରର ମିଥ୍ୟା ବସ୍ତୁମାନ ଯାହା ଏହି କ୍ଷଣରେ ଅଛି ପୁଣି ପରକ୍ଷଣରେ ରହିପାରେ ନାହିଁ, ତାହାକୁ ନେଇ ତାହାର ଚିନ୍ତନରେ ନିଜର ସମୟ କିଏ କଟାଇବ ? ଏଇଥିପାଇଁ ଭଗବାନଙ୍କ ଚିନ୍ତନରୁ ବିମୁଖ କିଏ ହେବ ? ଏଇ ସବୁ ବିଚ୍ଛର କରି ସେ ଧନଠାରୁ ଅଲଗା ରହୁଥିଲେ।

ଭୀଷ୍ମପିତାମହ ପାଣ୍ଡୁ ଓ ଧୃତରାଷ୍ଟ୍ରଙ୍କ ବିବାହ କରିଦେବା ପରେ ବିଦୁରଙ୍କର ମଧ୍ୟ ପାଳି ଆସିଲା । ସେ ସମୟରେ ମଥୁରାରେ ଦେବକଙ୍କ ବଡ଼ ପ୍ରଭାବ ଥିଲା । ତାଙ୍କର ଗୋଟିଏ ଦାସୀ ଥିଲା । ତାର ସର୍ବଗୁଣ-ସମ୍ପନ୍ନ କନ୍ୟା ସହିତ ଭୀଷ୍ମପିତାମହ ବିଦୁରଙ୍କ ବିବାହ କରାଇ ଦେଲେ । ବିଦୁର ନିଜର ଧର୍ମପତ୍ନୀଙ୍କ ସହିତ ଗାର୍ହସ୍ଥ୍ୟ ଧର୍ମ ପାଳନ କରି ଭଗବାନଙ୍କ ଭଜନ କରିବାକୁ ଲାଗିଲେ ।

ଏକ ପ୍ରକାରେ ସେ ଧୃତରାଷ୍ଟ୍ରଙ୍କର ମନ୍ତ୍ରୀ ମଧ୍ୟ ଥିଲେ ଏବଂ ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ ଆଦିଙ୍କ ପ୍ରାଧାନ୍ୟ ହୋଇ ନ ଥିବା ପର୍ଯ୍ୟନ୍ତ ତାଙ୍କରି ମନ୍ତ୍ରୀତ୍ୱରେ ରାଜକାର୍ଯ୍ୟ ଚଳୁଥିଲା । ସ୍ୱୟଂ ଧର୍ମଙ୍କ ମନ୍ତ୍ରୀତ୍ୱରେ ରାଜକାର୍ଯ୍ୟ ସଞ୍ଚାଳନ କି ପ୍ରକାର ହେଉଥିଲା, ଏହା କହିବାର ଆବଶ୍ୟକତା ନାହିଁ । ସେହି ଦିନମାନଙ୍କରେ ସେଠାରେ ବଡ଼ ସୁଖ ଥିଲା, ବଡ଼ ଶାନ୍ତି ଥିଲା, ପାଣ୍ଡୁ ଯେଉଁଠାରେ ରହୁଥିଲେ, ସେଠାରେ ତାଙ୍କ ପାଇଁ ଆବଶ୍ୟକୀୟ ସାମଗ୍ରୀ ଉପସ୍ଥିତ ରହୁଥିଲା ଏବଂ କୌଣସି ପ୍ରଜାଙ୍କୁ କୌଣସି ପ୍ରକାର କଷ୍ଟ ହେଉ ନ ଥିଲା । ଏହା କିପରି ନ ହେବ, ଧର୍ମଙ୍କ ହାତରେ ସମସ୍ତ ବ୍ୟବସ୍ଥା ଯେ ରହିଥିଲା ।

## (୨)

ଧର୍ମର ସରଳ-ରୁ-ସରଳ ଓ ଗହନ-ରୁ-ଗହନ ଅର୍ଥ ହେଲା ସମସ୍ତଙ୍କର କଲ୍ୟାଣ । ଏପରି କୌଣସି ବ୍ୟକ୍ତି ନାହିଁ, ଏପରି କୌଣସି ବସ୍ତୁ ନାହିଁ, ଯାହାଙ୍କ ଅନ୍ତଃସ୍ଥଳରେ ଧର୍ମ ନ ରହିବ ଏବଂ ସମୟ ଆସିଲେ ଯାହାଦ୍ୱାରା ସମସ୍ତଙ୍କ କଲ୍ୟାଣ ହେବ, ଏପରି କାମ ପାଇଁ ପ୍ରେରଣା ନ ହେବ । ପାଣ୍ଡବମାନଙ୍କ ମଧ୍ୟରେ ଯୁଧିଷ୍ଠିର ରୂପରେ ଧର୍ମରାଜ ଥିଲେ, କୌରବମାନଙ୍କ ମଧ୍ୟରେ ମଧ୍ୟ ବିଦୁର ରୂପରେ ଧର୍ମରାଜ ଥିଲେ । ଅନ୍ତର ଏତିକି ଯେ ପାଣ୍ଡବମାନଙ୍କ ମଧ୍ୟରେ ଧର୍ମ ରାଜା ଥିଲେ । ତାଙ୍କରି ଆଜ୍ଞାନୁସାରେ ସବୁକାମ ହେଉଥିଲା ଏବଂ କୌରବମାନଙ୍କ ମଧ୍ୟରେ ସେ କେବଳ ମାତ୍ର ପରାମର୍ଶଦାତା ରୂପେ ଥିଲେ । ଯେପରି ପାପର ପ୍ରବୃତ୍ତି ହେବାବେଳେ ଅନ୍ତରାତ୍ମା କହିଦିଏ ଯେ ଏହା ପାପ, କର ନାହିଁ; ପରନ୍ତୁ ପାପୀ ଲୋକ

ସେହି ପରାମର୍ଶ ଶୁଣେ ନାହିଁ ବା ଶୁଣି ମଧ୍ୟ ହେୟଜ୍ଞାନ କରେ, ସେପରି କୌରବମାନଙ୍କୁ ଅନ୍ୟାୟରେ ପ୍ରବୃତ୍ତ ଦେଖି ବିଦୁର ସ୍ପଷ୍ଟ କହି ଦେଉଥିଲେ ଯେ 'ଏହା ଅନ୍ୟାୟ, ଏପରି କର ନାହିଁ ।' ପରନ୍ତୁ ସେମାନେ ବିଦୁରଙ୍କ କଥାକୁ ଗୁରୁତ୍ୱ ଦେଉ ନଥିଲେ, ତାଙ୍କୁ ଉପେକ୍ଷା କରି ଦେଉଥିଲେ । ବିଦୁରଙ୍କ ଜୀବନରେ ସର୍ବଦା ଆମେ ଦେଖିବା ଯେ, ସେ କାହାରି ଅନିଷ୍ଟ ଚାହାନ୍ତି ନାହିଁ, ସମସ୍ତଙ୍କର କଲ୍ୟାଣ ଚାହାନ୍ତି ।

ବିଦୁର କୌରବମାନଙ୍କୁ ପରାମର୍ଶ ତ ଦେଉଥିଲେ, ସମୟ ଆସିଲେ ପାଣ୍ଡବମାନଙ୍କୁ ମଧ୍ୟ ଉଚିତ ପରାମର୍ଶ ଦେଉଥିଲେ ଏବଂ ସେମାନଙ୍କ ଉପରେ କୌଣସି ଆପତ୍ତି, ବିପତ୍ତିର ସମ୍ଭାବନା ହେବା ମାତ୍ରେ ପ୍ରଥମରୁ ସୂଚାଇ ଦେଉଥିଲେ, ସେମାନେ ବ୍ୟାକୁଳ ହେବାବେଳେ ସେମାନଙ୍କୁ ବୁଝାଉ ଥିଲେ, ଧୈର୍ଯ୍ୟ ଦେଉଥିଲେ । ଏହି କଥାମାନଙ୍କରେ ମହାଭାରତର ଅନେକାଂଶ ପୂର୍ଣ୍ଣ ହୋଇ ରହିଛି । ଏଠାରେ କେବଳ କିଛିଟା ଚର୍ଚ୍ଚା କରାଯିବ ।

ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ଉପରେ ବଡ଼ ଶତ୍ରୁଭାବ ରଖିଥିଲା । ସେ ରାତିଦିନ ଚିନ୍ତା କରୁଥିଲା ଯେ କି ପ୍ରକାର ସେମାନଙ୍କୁ ନଷ୍ଟ କରିଦେବ । ଏଥିପାଇଁ ସେ ଅନେକ ଉପାୟ କଲା । ଥରେ ଜଳବିହାର ପାଇଁ ପାଣ୍ଡବମାନଙ୍କୁ ଡକାଇଲା । ଦୁର୍ଯ୍ୟୋଧନ ପ୍ରଥମରୁ ବିଷ ଲଡ଼ୁ ତିଆରି କରି ରଖିଥିଲା । ସେ ଅତି ପ୍ରେମରେ ନିଜ ହାତରେ ଭୀମସେନକୁ ସେହି ବିଷଲଡ଼ୁ ଖୁଆଇ ଦେଲା । ତାହା ପରେ ଭୀମସେନ ବେହୋସ ହେବା ପରେ ତାକୁ ଲଟାମାନଙ୍କରେ ବାନ୍ଧିଦେଇ ଗଙ୍ଗାରେ ଫିଙ୍ଗି ଦେଲା । ଜଳ-ବିହାର ସ୍ଥାନରୁ ଚାଲିଯିବା ପରେ ଯୁଧିଷ୍ଠିର ଚିନ୍ତା କଲେ ଯେ ଭୀମ ପ୍ରଥମରୁ ଚାଲି ଯାଇଥିବ । ଏ କଥା ତାଙ୍କ ମନରେ କେବେ ନ ଥିଲା ଯେ ଦୁର୍ଯ୍ୟୋଧନ ଭୀମସେନର କିଛି ଅନିଷ୍ଟ କରିବ । ସେମାନେ ଫେରି କୁନ୍ତୀଙ୍କ ନିକଟକୁ ଆସିବାବେଳେ ସେ ଭୀମ କଥା ପଚାରିଲେ, ସେମାନେ କହିଲେ ଯେ ଆମେ ଭାବିଲୁ ଭୀମ ତୁମ ପାଖକୁ ଆସି ଯାଇଥିବ । ତାହାର କ'ଣ କିଛି ଅନିଷ୍ଟ ହେଲା କି ? ଅନିଷ୍ଟ ଆଶଙ୍କାରେ କୁନ୍ତୀଙ୍କ ହୃଦୟ କମ୍ପି ଉଠିଲା । ସେ ଆଉ କ'ଣ କରି ପାରନ୍ତେ, ବିଦୁରଙ୍କୁ ଡକାଇଲେ ।

କୁନ୍ତୀ ବିଦୁରଙ୍କୁ କହିଲେ—'ଦେବର ! କେଜାଣି ଭୀମସେନ କୁଆଡ଼େ

ଗଲା? ସବୁ ଭାଇ ତ ଜଳ-ବିହାର କରି ଲେଉଟି ଆସିଲେ, ପରନ୍ତୁ ଭୀମ ଆସିଲା ନାହିଁ । ମୋତେ ଡର ଯେ ଦୁର୍ଯ୍ୟୋଧନ ତାକୁ କପଟ କରି ମାରି ଦେଇ ନଥିବ ତ ! ସେ ବଡ଼ କ୍ରୂର, ଦୁର୍ବୁଦ୍ଧି ଓ ଲୋଭୀ । ମୋର ମନ ଛଟପଟ ହୋଇ ଯାଉଛି, ମୋର କିଛି ବୁଦ୍ଧି ଆସୁ ନାହିଁ, କ'ଣ କରିବି ? ବିଦୁର ଅତି ଦୃଢ଼ତାର ସହିତ କହିଲେ—'ରାଣୀ ! ଏପରି କଥା ମନରେ ଆଣିବା ମଧ୍ୟ ଉଚିତ ନୁହେଁ । ନିଜ ପୁତ୍ର ସମ୍ବନ୍ଧରେ ଏପରି ଚିନ୍ତା ତୁମ ପରି ବୀର ରମଣୀଙ୍କ ନିକଟରେ ଶୋଭାପାଏ ନାହିଁ । ଯେଉଁ ପୁତ୍ରମାନେ ତୁମ ପାଖରେ ଅଛନ୍ତି ସେମାନଙ୍କୁ ରକ୍ଷା କର, ଏ ସମୟରେ ଦୁର୍ଯ୍ୟୋଧନ ଉପରେ କିଛି କଳଙ୍କ ଲଗାଅ ନାହିଁ । କିଛି କହିଲେ ବା ଶୁଣିଲେ ସେ ଆହୁରି ଅନିଷ୍ଟ କରିବାକୁ ଚେଷ୍ଟା କରିପାରେ । ଭୀମସେନ ସମ୍ବନ୍ଧରେ ନିଶ୍ଚିନ୍ତ ରୁହ । ତାହାର ଅନିଷ୍ଟ ତ କେହି କରି ପାରିବେ ନାହିଁ । ମହାମୁନି ବ୍ୟାସଦେବ ତୁମକୁ ଯେଉଁ ଆଶୀର୍ବାଦ ଦେଇଛନ୍ତି ଯେ ତୁମର ସମସ୍ତ ପୁତ୍ର ଚିରଜୀବୀ ହେବେ, ତାହା କେବେ ମିଥ୍ୟା ହୋଇ ନ ପାରେ । ଭୀମ ଶୀଘ୍ର ତୁମ ନିକଟକୁ ଫେରି ଆସିବ ଓ ତୁମକୁ ପ୍ରସନ୍ନ କରିବ ।'

ବିଦୁରଙ୍କ କଥାରେ କୁନ୍ତୀଙ୍କର ଆଶଙ୍କା ଦୂର ହୋଇଗଲା ଏବଂ କିଛି ସମୟ ପରେ ନାଗଲୋକରୁ ଅମୃତ ରସ ପାନ କରି ଦଶ ହଜାର ହାତୀଙ୍କର ବଳରେ ଯୁକ୍ତ ହୋଇ ଭୀମସେନ ଲେଉଟି ଆସିଲା । ଯୁଧିଷ୍ଠିର ଭୀମସେନକୁ କହିଲେ ଯେ, "ଏହି କଥା କାହାରି ଆଗରେ ପ୍ରକଟ କରିବା ଉଚିତ ନୁହେଁ । ବିଦୁର ଦାଦା ଏପରି କହିଛନ୍ତି ଏବଂ ଏପରି କଲେ ଆମର ମଙ୍ଗଳ ହେବ ।" ବିଦୁରଙ୍କ ସତ୍-ଶିକ୍ଷା ଦ୍ୱାରା ପାଣ୍ଡବମାନେ ଦୁର୍ଯ୍ୟୋଧନର ଏହି ଦୁଷ୍ଟତାକୁ ଭୁଲି ଗଲେ । ସେମାନେ ଏ ବିଷୟରେ ଚର୍ଚ୍ଚା ମଧ୍ୟ କରି ନ ଥିଲେ ।

ଦୁର୍ଯ୍ୟୋଧନ ନିଜର ଷଡ଼ଯନ୍ତ୍ର ବିଫଳ ହେବା ଦେଖି ମନେ ମନେ ଜଳି ଉଠିଲା । ଦ୍ରୋଣାଚାର୍ଯ୍ୟଙ୍କ ନିକଟରେ ଶିକ୍ଷା ଗ୍ରହଣ କରିବା ସମୟରେ ମଧ୍ୟ ସେ ପାଣ୍ଡବମାନଙ୍କୁ ଅପମାନ ଦେବାକୁ ଇଚ୍ଛା କଲା; କିନ୍ତୁ କିଛି କରିହେଲା ନାହିଁ । ପରେ ସେ ଧୃତରାଷ୍ଟ୍ରଙ୍କ କାନରେ କହିବା ଆରମ୍ଭ

କରିଦେଲା ଏବଂ ଏହି କଥା ଠିକ୍ କରାଇ ନେଲା ଯେ ପାଣ୍ଡବମାନେ ବର୍ତ୍ତମାନ ବାରଣାବତ-ନଗରରେ ରହିବେ । ସେମାନଙ୍କ ପାଇଁ ନୂଆ ଉଆସ ତିଆରି କରିବାର ବ୍ୟବସ୍ଥା ହେଲା । ଦୁର୍ଯ୍ୟୋଧନ ପୁରୋଚନ ନାମକ ମନ୍ତ୍ରୀକୁ ଏକାନ୍ତରେ ଡାକି କହିଲା 'ଭାଇ ! ବର୍ତ୍ତମାନ ସାରା ପୃଥିବୀର ରାଜା ମୁଁ ଓ ତୁମେ ଦୁହେଁ ରହିବା । ତୁମେ ମୋର ବଡ଼ ବିଶ୍ୱାସ ପାତ୍ର । ଶତ୍ରୁମାନଙ୍କୁ ନାଶ କରିବା ପାଇଁ ତୁମେ ମୋତେ ସହାୟତା କର । ତୁମେ ବାରଣାବତରେ ଏପରି ପ୍ରାସାଦ ତିଆରି କର, ଯେଉଁଥିରେ ଝୋଟ, ତେଲ, ଘିଅ, ଲାଖ, କାଠର ବ୍ୟବହାର ଅଧିକ ହେବ ଏବଂ ଉପରେ ଏପରି ଲେପ ଲଗାଇଦେବ ଯେ କେହି ଏହାର ନାମ ଗନ୍ଧ ମଧ୍ୟ ଜାଣି ପାରିବେ ନାହିଁ । ଏପରି ବସ୍ତୁମାନ ସେଥିରେ ସ୍ଥାନେ ସ୍ଥାନେ ରଖିଦେଇଥିବ ଯେ କାହାରିକୁ ଟିକିଏ ହେଲେ ଏହାର ପତା ମିଳିବ ନାହିଁ । ଯୁଧିଷ୍ଠିର ସେଠାକୁ ଯିବା ପରେ ତୁମେ ତାଙ୍କର ଖୁବ୍ ସେବା କରିବ ଏବଂ ସେ ତୁମକୁ ଖୁବ୍ ବିଶ୍ୱାସ କରିବା ପରେ ସେହି ପ୍ରାସାଦର ଦ୍ୱାରରେ ନିଆଁ ଲଗାଇ ଦେବ । ବେସ୍ ! ସେମାନେ ମରିଯିବା ପରେ ତ ତୁମର ସବୁ ଅଧିକାର ହେବ । ପୁରୋଚନ ଯାଇଁ ଏପରି ଏକ ମହଲ ତିଆରି କରିଦେଲା ଏବଂ ଧୃତରାଷ୍ଟ୍ର କୁନ୍ତୀ ସହିତ ପାଣ୍ଡବମାନଙ୍କୁ ସେଠାକୁ ଯିବାପାଇଁ ଆଜ୍ଞା ଦେଲେ ।

ପାଣ୍ଡବମାନେ କୁନ୍ତୀଙ୍କ ସହିତ ବାରଣାବତ ଯିବା ସମୟରେ ସମସ୍ତ ଗୁରୁଜନଙ୍କୁ ପ୍ରଣାମ କରି ଆଜ୍ଞା ନେଲେ । ପ୍ରଜାମାନେ ବହୁତ ବିରୋଧ କଲେ, ପରନ୍ତୁ ଯୁଧିଷ୍ଠିର ସମସ୍ତଙ୍କୁ ବୁଝାଇ ଦେଲେ । ସମସ୍ତେ ଯିବା ପରେ ବିଦୁର ସାଙ୍କେତିକ ଭାଷାରେ ଯୁଧିଷ୍ଠିରଙ୍କୁ ବୁଝାଇ ଦେଲେ । ସେ କହିଲେ—'ଯୁଧିଷ୍ଠିର ! ବୁଦ୍ଧିମାନ ମନୁଷ୍ୟ ଶତ୍ରୁମାନଙ୍କର ଗୁପ୍ତ ରହସ୍ୟ ବୁଝି ପ୍ରଥମରୁ ସେଥିରୁ ରକ୍ଷା ପାଇବାର ଉପାୟ କରିବା ଉଚିତ । ଏକ ପ୍ରକାର ଅସ୍ତ୍ର ଅଛି, ତାହା ଲୁହାରେ ତିଆରି ନୁହେଁ, ପରନ୍ତୁ ତାହାଦ୍ୱାରା ମୃତ୍ୟୁ ହୋଇପାରେ । ତାହାକୁ ଯିଏ ଜାଣିନିଏ ସେ ରକ୍ଷା ପାଇଯାଏ । (ଅର୍ଥାତ୍ ତୁମ୍ଭମାନଙ୍କୁ ପୋଡ଼ିଦେଇ ମାରିଦେବା ପାଇଁ ଶତ୍ରୁମାନେ ଶୀଘ୍ର ଜଳିଯାଉଥିବା ପଦାର୍ଥମାନଙ୍କରେ ଭବନ ତିଆରି କରାଇଛନ୍ତି ।) ଦେଖ,

ନିଆଁ ଜଙ୍ଗଲକୁ ଜଳାଇ ଦେଇ ପାରେ, ପରନ୍ତୁ ଗାତରେ ରହିଥିବା ଜୀବମାନଙ୍କୁ ଜଳାଇ ପାରେ ନାହିଁ । ବିପଦ ଆସିଲେ ଏହି ପ୍ରକାରେ ନିଜକୁ ସୁରକ୍ଷିତ ରଖିବା ଉଚିତ। (ଅର୍ଥାତ୍ ତୁମ୍ଭେମାନେ ସୁଡ଼ଙ୍ଗଦେଇ ବାହାରିଯିବ।) ଅନ୍ଧକୁ ରାସ୍ତା ମିଳେ ନାହିଁ, ତାହାର ଦିଗ୍‌ଭ୍ରମ ମଧ୍ୟ ହୋଇପାରେ । ଧର୍ମହୀନକୁ ସମ୍ପତ୍ତି ମିଳେ ନାହିଁ। ମୋ କଥା ଭଲ ଭାବରେ ମନେ ରଖିବ। (ଅର୍ଥାତ୍ ତୁମ୍ଭେମାନେ ପ୍ରଥମରୁ ମାର୍ଗ ଓ ଦିଗମାନଙ୍କର ଜ୍ଞାନ ପ୍ରାପ୍ତ କରି ନେବ ଏବଂ କଥାକୁ ଏପରି ଗୁପ୍ତ ରଖିବ ଯେ କାହାରିକୁ ଏହାର ପତା ମିଳିବ ନାହିଁ ।) ଦୁଷ୍ଟ ପୁରୁଷମାନଙ୍କ ଦ୍ୱାରା ଦିଆ ଯାଇଥିବା ବିନା ଲୁହାର ଶସ୍ତ୍ରକୁ ସ୍ୱୀକାର କରିନେବା ଉଚିତ । ତାଙ୍କରି ସ୍ଥାନରେ ଶରଣ ନେଇ ନିଆଁର ଦାଉରୁ ରକ୍ଷା ପାଇଯିବା ଉଚିତ। (ଅର୍ଥାତ୍ ପୁରୋଚନ ତିଆରି କରିଥିବା ଗୃହରେ ଆନନ୍ଦରେ ରହିବ। ସୁବିଧା ଦେଖି ବାହାରିଯିବ ।) ବୁଲାବୁଲି କଲେ ବାଟମାନଙ୍କ ଜ୍ଞାନ ହୋଇଯିବ । ନକ୍ଷତ୍ରମାନଙ୍କୁ ଦେଖି ଦିଗଜ୍ଞାନ ହୋଇଯାଏ। ବୁଦ୍ଧିମତ୍ତାର ସହିତ ପଞ୍ଚଇନ୍ଦ୍ରିୟଙ୍କୁ ନିଜ ବଶରେ ରଖିଲେ କୌଣସି ପ୍ରକାର ପୀଡ଼ା ହୁଏ ନାହିଁ । କାମ-କ୍ରୋଧାଦି ଶତ୍ରୁ ତାହାର ହାନି କରି ପାରନ୍ତି ନାହିଁ ।

ବିଦୁରଙ୍କ ଉପଦେଶ ଶୁଣି ଯୁଧିଷ୍ଠିର କହିଲେ—'ମୁଁ ଆପଣଙ୍କ ଉପଦେଶ ବୁଝିଗଲି । ଏପରି ହିଁ ହେବ ।' ବିଦୁର ସେଠାରୁ ନିଜ ଘରକୁ ଫେରି ଆସିଲେ ଓ ପାଣ୍ଡବମାନେ ବାରଣାବତ ଗଲେ । ସେଠାରେ ପ୍ରଜାମାନେ ସେମାନଙ୍କର ସ୍ୱାଗତ କଲେ । ପୁରୋଚନ ସେମାନଙ୍କୁ ଲାକ୍ଷାଗୃହରେ ରହିବା ବ୍ୟବସ୍ଥା କରିଦେଲା । ସେ ଅତି ପ୍ରେମରେ ଏମାନଙ୍କ ସେବା କରି ବିଶ୍ୱାସ ପାତ୍ର ହେବାଲାଗି ଦୁଷ୍ଟଯତ୍ନ କରିବାକୁ ଲାଗିଲା ।

ବିଦୁରଙ୍କ ଜଣେ ମିତ୍ର ବଡ଼ ଚତୁର ଓ ବିଶ୍ୱାସପାତ୍ର ଥିଲା ଏବଂ ସୁଡ଼ଙ୍ଗ ଖୋଳିବାରେ ନିପୁଣ ଥିଲା । ବିଦୁର ତାହାକୁ ଏକାନ୍ତରେ ଡକାଇ ସବୁକଥା ବୁଝାଇଦେଲେ ଏବଂ କହିଲେ—'ତୁମେ ଯାଇ ପାଣ୍ଡବମାନଙ୍କର ମଙ୍ଗଳ କର ।' ତାହାକୁ ପାଣ୍ଡବମାନଙ୍କର ବିଶ୍ୱାସ ପାଇବା ପାଇଁ କିଛି ଗୁପ୍ତ କଥା ମଧ୍ୟ ବତାଇ ଦେଲେ । ସେ ଯୁଧିଷ୍ଠିରଙ୍କ ନିକଟକୁ ଗଲା ଏବଂ ସେ ବିଦୁର ବତାଇଥିବା ସଂକେତ ଦ୍ୱାରା ଯୁଧିଷ୍ଠିରଙ୍କ ବିଶ୍ୱାସ ପ୍ରାପ୍ତ

କରିପାରିଲା । ସେ ଯୁଧିଷ୍ଠିରଙ୍କୁ କହିଲା—ମୁଁ ଖୋଳାଇକାମ କରିବା କାରିଗର । ଆଗାମୀ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ରାତିରେ ପୁରୋଚନ ଏହି ଘରେ ନିଆଁ ଲଗାଇ ଦେବ । ଦୁର୍ଯ୍ୟୋଧନ ଆପଣମାନଙ୍କୁ କୁନ୍ତୀଙ୍କ ସହିତ ଜାଳିଦେବାପାଇଁ ବ୍ୟବସ୍ଥା କରିଛି । ମୋତେ ସୁଡ଼ଙ୍ଗ ଖୋଳିବା ପାଇଁ ଆଜ୍ଞା ଦିଅନ୍ତୁ ।' ଯୁଧିଷ୍ଠିର କହିଲେ—ବିଦୁର ମୋର ହିତାକାଂକ୍ଷୀ । ତୁମେ ମଧ୍ୟ ମୋ ପାଇଁ ବିଦୁରଙ୍କ ପରି । ସେ ଯେପରି ଆମରି ହିତ କରନ୍ତି ସେପରି ତୁମେ ମଧ୍ୟ ଆମର ମଙ୍ଗଳ କର । ଦୁର୍ଯ୍ୟୋଧନ ପାଖରେ ଏବେ ସମ୍ପତ୍ତି ଅଛି, ତାହାର ସହାୟକ ମଧ୍ୟ ବହୁତ ଅଛନ୍ତି, ଯଦି ତାହାକୁ ଏହାର ଖବର ହୋଇଯିବ ତେବେ ମୋର ବହୁତ ଅନିଷ୍ଟ ହୋଇପାରେ । ବିଦୁରଙ୍କ କଥା ସତ୍ୟ ହେବ । ବର୍ତ୍ତମାନ ତୁମେ ଆମକୁ ଏହି ବିପଦରୁ ରକ୍ଷା କର । ସୁଡ଼ଙ୍ଗ ଖୋଳି ଦିଆଗଲା ଏବଂ ନିଆଁ ଲାଗିବା ସମୟରେ ପାଣ୍ଡବମାନେ ସେଇ ରାସ୍ତାରେ ବାହାରି ଗଲେ । କାହାରିକୁ ଏ ଖବର ଜଣା ପଡ଼ିଲା ନାହିଁ । ବିଦୁରଙ୍କ କୃପାରୁ ପାଣ୍ଡବମାନେ ଏଇ ମହାନ୍ ବିପତ୍ତିରୁ ବଞ୍ଚିଗଲେ ।

ବହୁଦିନ ପରେ ଜଣାଗଲା, ପାଣ୍ଡବମାନେ ଜୀବିତ ଏବଂ ରାଜା ଦ୍ରୁପଦଙ୍କର କନ୍ୟା ଦ୍ରୌପଦୀ ସହିତ ସେମାନଙ୍କର ବିବାହ ହୋଇ ଯାଇଛି । ଏହା ଶୁଣି ଦୁର୍ଯ୍ୟୋଧନ, କର୍ଣ୍ଣ ଆଦିଙ୍କୁ ବଡ଼ କଷ୍ଟ ହେଲା । ସେମାନେ ପୁନର୍ବାର ପାଣ୍ଡବମାନଙ୍କ ବିନାଶର ଉପାୟ ଚିନ୍ତା କଲେ । ବିଦୁର ଅତି ଆନନ୍ଦିତ ହେଲେ ଏବଂ ସେ ଯାଇ ଧୃତରାଷ୍ଟ୍ରଙ୍କୁ କହିଲେ—'ଖୁବ୍ ଭଲ ହେଲା, ଖୁବ୍ ଭଲ ହେଲା' । ବିଦୁର ତାଙ୍କୁ ବୁଝାଇ ଦେଲେ ଯେ 'ଏବେ ଦ୍ରୁପଦଙ୍କ ସହିତ ଆମର ମିତ୍ରତା ହୋଇଯିବ, ସେ ଆମର ସମ୍ବନ୍ଧୀ ହୋଇଗଲେ, ବର୍ତ୍ତମାନ ପାଣ୍ଡବମାନଙ୍କୁ ଆଦରପୂର୍ବକ ଡାକି ଆଣିବା ଉଚିତ ।' ବିଦୁର ଚାଲି ଯିବା ପରେ ଦୁର୍ଯ୍ୟୋଧନ ଧୃତରାଷ୍ଟ୍ରଙ୍କୁ କହିଲେ—'ସେମାନଙ୍କୁ ଡାକି ଆଣିବା ଠିକ୍ ନୁହେଁ । ଆମେ ବହୁତ ଦିନରୁ ସେମାନଙ୍କୁ ନଷ୍ଟ କରିଦେବା ପାଇଁ ଷଡ଼ଯନ୍ତ୍ର କରିଛୁଁ, କିନ୍ତୁ ସଫଳ ହୋଇନାହୁଁ । ଏହି ଥର ଏପରି ଉପାୟ କରିବା ଯେପରି ଆମର ରାଜ୍ୟ ନିଷ୍କଣ୍ଟକ ହୋଇଯିବ ।' କର୍ଣ୍ଣ କହିଲେ—ମୋତେ ଧୂର୍ତ୍ତ ନୀତି ପସନ୍ଦ ଲାଗୁନାହିଁ ।

ଏହି ପ୍ରକାରେ ସେମାନଙ୍କର କିଛି ଅନିଷ୍ଟ କରିହେବ ନାହିଁ । ସେମାନଙ୍କ ଉପରେ ଆକ୍ରମଣ କରିବା ଉଚିତ । ଦ୍ରୁପଦ ସେମାନଙ୍କ ସହାୟକ ହେଲେ କ'ଣ ହେଲା ? ସେମାନେ ସମସ୍ତେ ମିଳି ଆମର ମୁକାବିଲା କରି ପାରିବେ ନାହିଁ । ମୁଁ ଏକୁଟିଆ ସମସ୍ତଙ୍କୁ ଜିତି ଯିବି । ଦୁର୍ଯ୍ୟୋଧନ ମଧ୍ୟ କହିଲା— 'ହଁ ଏହି କଥା ଠିକ୍ ।' କର୍ଣ୍ଣ କହିଲେ—'ପରାକ୍ରମ କରିବା ହିଁ କ୍ଷତ୍ରିୟର ଧର୍ମ । ସାମ, ଦାନ ବା ଭେଦ ଦ୍ୱାରା ପାଣ୍ଡବଙ୍କୁ ଜିଣା ଯାଇ ପାରିବ ନାହିଁ । ସେମାନଙ୍କୁ ପ୍ରକଟରୂପରେ ଜିଣାଯାଇପାରେ । ପରନ୍ତୁ ଗୋଟିଏ କଥା ପ୍ରତି ଧ୍ୟାନ ଦେବା ଉଚିତ ଏବଂ ହଠାତ୍ କରିଦେବା ଉଚିତ; ନ ହେଲେ ଯଦି ଶ୍ରୀକୃଷ୍ଣଙ୍କୁ ଜଣା ପଡ଼ିଯିବ ଏବଂ ସେମାନେ ଯାଦବମାନଙ୍କ ସେନା ନେଇ ଆସି ଧମକାଇବେ, ତେବେ ସେମାନଙ୍କୁ ଜିଣିବା କଠିନ ହୋଇଯିବ । ଶ୍ରୀକୃଷ୍ଣଙ୍କ ନୀତି କୌଶଳ ଆଗରେ ଆମର ତିଷ୍ଠିବା ସହଜ ନୁହେଁ ।'

ଧୃତରାଷ୍ଟ୍ର କହିଲେ—'କର୍ଣ୍ଣ ! ତୁମ କଥା ବୀରମାନଙ୍କ ଯୋଗ୍ୟ । ତୁମର ଏହି ସ୍ପଷ୍ଟ ନୀତିକୁ ମୁଁ ପ୍ରଶଂସା କରୁଛି । କିନ୍ତୁ ମୋର ଇଚ୍ଛା ଯେ ତୁମେ ଓ ଦୁର୍ଯ୍ୟୋଧନ ଦୁହେଁ ଭୀଷ୍ମପିତାମହ, ଦ୍ରୋଣାଚାର୍ଯ୍ୟ ଓ ବିଦୁରଙ୍କ ସହିତ ପରାମର୍ଶ କରି କିଛି ନିର୍ଣ୍ଣୟ କର । ସେମାନଙ୍କ ସମ୍ମତି ବ୍ୟତିରେକେ କୌଣସି କାର୍ଯ୍ୟ କରିବା ଉଚିତ ନୁହେଁ ।' ଭୀଷ୍ମ, ଦ୍ରୋଣ ଓ ବିଦୁରଙ୍କୁ ଡକାଗଲା । ଏହି ବିଷୟରେ ସେମାନଙ୍କ ସମ୍ମତି ପଚାରିବାବେଳେ ଭୀଷ୍ମ ଓ ଦ୍ରୋଣ ଏକ ସ୍ୱରରେ ପାଣ୍ଡବଙ୍କ ପ୍ରତି ଦ୍ରୋହର ବିରୋଧ କଲେ । ସେମାନେ କହିଲେ—'ଆମପାଇଁ କୌରବ ଓ ପାଣ୍ଡବ ଦୁହେଁ ହିଁ ସମାନ । ଆମେ ଦୁହିଁଙ୍କୁ ଏକାପରି ଭଲ ପାଉଁ । ଏପରି ଦଶାରେ ପାଣ୍ଡବମାନଙ୍କ ସହିତ ଶତ୍ରୁତା ବା ଯୁଦ୍ଧର ଅନୁମୋଦନ ଆମେ କରି ପାରିବୁ ନାହିଁ ।' ସେହି ଲୋକମାନେ ଦୁର୍ଯ୍ୟୋଧନକୁ ବହୁତ ବୁଝାଇଲେ, ଦ୍ରୋଣାଚାର୍ଯ୍ୟ ଓ କର୍ଣ୍ଣଙ୍କ ମଧ୍ୟରେ ତ କିଛି କଥା କଟାକଟି ମଧ୍ୟ ହୋଇଗଲା ।

ଶେଷରେ ବିଦୁର କହିଲେ—ସ୍ୱଜନମାନଙ୍କର କର୍ତ୍ତବ୍ୟ ଯେ ସେମାନେ ରୋକ୍‌ଠୋକ୍ ମଙ୍ଗଳ କଥା କହିଦେବେ । ଆପଣ ଶୁଣିବାକୁ ଚାହାନ୍ତି ନାହିଁ, ଏଣୁ ଲୋକେ କହିବାକୁ ଇଚ୍ଛା କରୁଥିବା କଥା କହନ୍ତି ନାହିଁ ।

ଭୀଷ୍ମ ଓ ଦ୍ରୋଣ ଦୁହେଁ ଆପଣଙ୍କ ବାସ୍ତବ ହିତୈଷୀ ଏବଂ ସେମାନେ ଯାହା କହୁଛନ୍ତି, ତାହା ଆପଣଙ୍କ ମଙ୍ଗଳ ପାଇଁ କହୁଛନ୍ତି । ଆପଣ ସତରେ ବୁଝନ୍ତୁ ଯେ, ପାଣ୍ଡବମାନଙ୍କୁ ପରାସ୍ତ କରିବାର ଶକ୍ତି କାହାରି ନାହିଁ । ସେମାନଙ୍କ ପକ୍ଷରେ ଧର୍ମ ଅଛି, ସେମାନେ ସତ୍ୟ ପଥରେ ଅଛନ୍ତି, ସଂସାରରେ ବଡ଼-ରୁ-ବଡ଼ ଦେବତା ମଧ୍ୟ ସେମାନଙ୍କ ଅନିଷ୍ଟ କରି ପାରିବେ ନାହିଁ, ଆପଣ କ'ଣ ଜାଣି ନାହାନ୍ତି ଯେ ସେମାନଙ୍କ ପକ୍ଷରେ ଅଛନ୍ତି— ଶ୍ରୀକୃଷ୍ଣ, ବଳରାମ ଓ ସାତ୍ୟକି । ଅନେକ ରାଜା ଓ ରାଜକୁମାର ମଧ୍ୟ ସେମାନଙ୍କର ପ୍ରେମୀ । ଏଇ ରାଜ୍ୟରେ ସେମାନଙ୍କ ଭାଗ ଅଛି, ଏକଥା ସମସ୍ତେ ଜାଣନ୍ତି । ପ୍ରଜାମାନଙ୍କୁ ପାଣ୍ଡବମାନେ ଜୀବିତ ବୋଲି ଜଣାଯିବା ପରେ ସେମାନଙ୍କୁ ଦେଖିବା ପାଇଁ ସବୁଲୋକ ବ୍ୟାକୁଳ ହୋଇ ଉଠିଛନ୍ତି । ସେମାନଙ୍କୁ ଲାକ୍ଷାଗୃହରେ ପୋଡ଼ି ମାରିଦେବାର ଚେଷ୍ଟା କରାଯାଇଥିଲା, ଏକଥା ବି ଏବେ କାହାରିକୁ ଅଛପା ନୁହେଁ । ସେମାନଙ୍କୁ ସମ୍ମାନ କରି ଆପଣ କଳଙ୍କ କାଳିମାକୁ ଧୋଇ ଦିଅନ୍ତୁ । ପାଣ୍ଡବମାନଙ୍କ ସହିତ ମିଶି ଚଳିଲେ ଆପଣଙ୍କର ଲାଭ ହେବ । ଦ୍ରୁପଦ ଆପଣଙ୍କ ପକ୍ଷର ହୋଇଯିବେ, ଶ୍ରୀକୃଷ୍ଣ ଆପଣଙ୍କର ସହାୟକ ହୋଇଯିବେ ଏବଂ ସାରା ଯଦୁବଂଶୀ ଆପଣଙ୍କର ଆଜ୍ଞାପାଳନ କରିବେ । ଶ୍ରୀକୃଷ୍ଣ ସାଧାରଣ ପୁରୁଷ ନୁହଁନ୍ତି ସାକ୍ଷାତ୍ ଭଗବାନ୍ । ସେ ଯେଉଁ ପକ୍ଷରେ ରହିବେ, ତାର ଜୟ ହେବ । ସେମାନଙ୍କ ସହିତ ମିଶି ଆପଣ ସାରା ସଂସାରରେ ନିଜ ରାଜ୍ୟ ବିସ୍ତାର କରି ପାରିବେ । ରାଜନ୍! ମୁଁ ଆପଣଙ୍କ ଆଗରେ ସ୍ପଷ୍ଟ ନିବେଦନ କରୁଛି ଯେ ଦୁର୍ଯ୍ୟୋଧନ, କର୍ଣ୍ଣ ଓ ଶକୁନି ଆଦି ସମସ୍ତେ କଞ୍ଚାବୁଦ୍ଧି ଅଟନ୍ତି । ଆପଣ ସେମାନଙ୍କ କଥା ଶୁଣନ୍ତୁ ନାହିଁ । ଯଦି ସେମାନଙ୍କ ବୁଦ୍ଧି ଅନୁସାରେ କାମ କରାଯାଏ, ତେବେ ନିଶ୍ଚିତ ଭାବେ ଆପଣଙ୍କର ସମସ୍ତ ପୁତ୍ରଙ୍କର, କ୍ଷତ୍ରିୟମାନଙ୍କର ଏବଂ ପ୍ରଜାମାନଙ୍କର ନାଶ ହୋଇଯିବ ।

ଧୃତରାଷ୍ଟ୍ର ଅତ୍ୟନ୍ତ ପ୍ରସନ୍ନତାର ସହିତ କହିଲେ—'ହଁ, ହଁ ଏ କଥା ମୁଁ ମଧ୍ୟ କହୁଛି ।' ଭୀଷ୍ମପିତାମହ, ଦ୍ରୋଣାଚାର୍ଯ୍ୟ—ଏମାନେ ବଡ଼ ଐଶ୍ୱର୍ଯ୍ୟଶାଳୀ ଓ ଜ୍ଞାନୀ । ଏମାନେ ଆମର ମଙ୍ଗଳ କଥା କହନ୍ତି । ତୁମର ସମ୍ମତି ମଧ୍ୟ ଆମର ମଙ୍ଗଳକାରୀ, ତଥା କଲ୍ୟାଣକାରୀ ଅଟେ ।

ତୁମ କଥା ସତ । ଦୁର୍ଯ୍ୟୋଧନ ଆଦି ଯେପରି ମୋ ପୁତ୍ର ସେପରି ପାଣ୍ଡବମାନେ ମଧ୍ୟ । ଏମାନଙ୍କର ରାଜ୍ୟରେ ଯେତିକି ଅଧିକାର, ସେମାନଙ୍କର ମଧ୍ୟ ସେତିକି । ବିଦୁର ! ତୁମେ ଯାଅ, ବିଶେଷ ସତ୍କାର ସହିତ କୁନ୍ତୀ ଓ ନବବଧୂ ଦ୍ରୌପଦୀଙ୍କ ସହିତ ପାଣ୍ଡବମାନଙ୍କୁ ଏଠାକୁ ନେଇଆସ । ପାଣ୍ଡବମାନେ କୁଶଳରେ ଅଛନ୍ତି, ସେମାନଙ୍କର ବିବାହ ହୋଇଗଲା, ଏହା ତ ଅତି ଆନନ୍ଦର କଥା । ଦ୍ରୌପଦୀଙ୍କ ପାଇଁ ଅନେକ ପ୍ରକାର ରତ୍ନ ଓ ବସ୍ତ୍ରାଭୂଷଣ ନେଇଯାଅ । ବିଦୁର ଉପହାର ସାମଗ୍ରୀ ନେଇ ରଥରେ ବସି ପାଞ୍ଚାଳଦେଶକୁ ଯାତ୍ରା କଲେ ।

ପାଞ୍ଚାଳକୁ ଯାଇ ସେ ପ୍ରଥମେ ଦ୍ରୁପଦଙ୍କୁ ସାକ୍ଷାତ କଲେ । ସେଠାରେ ତାଙ୍କର ସ୍ୱାଗତ-ସତ୍କାର ହେବାପରେ ସେ ଶ୍ରୀକୃଷ୍ଣଙ୍କ ପାଖକୁ ଗଲେ ଏବଂ ତାଙ୍କୁ ଦର୍ଶନ କରି ଅତ୍ୟନ୍ତ ଆନନ୍ଦିତ ହେଲେ । ବିଦୁର ବହୁଦିନରୁ ଶ୍ରୀକୃଷ୍ଣଙ୍କ ଦର୍ଶନ ଚାହୁଁଥିଲେ, ପରନ୍ତୁ ଏପର୍ଯ୍ୟନ୍ତ ଅବସର ମିଳି ନ ଥିଲା । ରାସ୍ତାରେ ଆସିବାବେଳେ ବିଚାର କରୁଥିଲେ ଯେ ସାକ୍ଷାତ୍ ଶ୍ରୀକୃଷ୍ଣଙ୍କ ଦର୍ଶନ ହୋଇଯିବ । ନିଜର ଅନେକ ଦିନର ଅଭିଳାଷ ପୂର୍ଣ୍ଣ ହେବା ଦେଖି ସେ ହଠାତ୍ ତାଙ୍କ ଚରଣତଳେ ପଡ଼ିଗଲେ । ଶ୍ରୀକୃଷ୍ଣ ତାଙ୍କୁ ଉଠାଇ ହୃଦୟରେ ଲଗାଇ ଦେଲେ । ଯୁଧିଷ୍ଠିର ମଧ୍ୟ ନିଜ ଭାଇମାନଙ୍କୁ ନେଇ ତାଙ୍କ ସହିତ ମିଳିଲେ ଏବଂ କୁନ୍ତୀଙ୍କ ସହିତ ଯଥାଯୋଗ୍ୟ ମିଳନ ହେଲା ।

ସଭାରେ ଉପସ୍ଥିତ ହେବାପରେ ବିଦୁର ଶ୍ରୀକୃଷ୍ଣ ଓ ପାଣ୍ଡବଙ୍କ ଆଗରେ ହିଁ ମହାରାଜା ଦ୍ରୁପଦଙ୍କୁ କହିଲେ—ରାଜନ୍ ! ରାଜା ଧୃତରାଷ୍ଟ୍ର, ବୃଦ୍ଧ ଭୀଷ୍ମପିତାମହ, ଦ୍ରୋଣାଚାର୍ଯ୍ୟ ଏବଂ ସମସ୍ତ କୌରବ ଆପଣଙ୍କୁ ଯଥୋଚିତ ଅଭିବାଦନ କହି ଆପଣଙ୍କର କୁଶଳ-ମଙ୍ଗଳ ପଚାରିଛନ୍ତି । ଆପଣଙ୍କ ସହିତ ସମ୍ବନ୍ଧ ହୋଇଯିବାରୁ ସମସ୍ତେ ଅତ୍ୟନ୍ତ ଆନନ୍ଦିତ । ବର୍ତ୍ତମାନ ସେଠାକାର ଲୋକମାନେ ପାଣ୍ଡବମାନଙ୍କୁ ଦେଖିବା ପାଇଁ ବହୁତ ଉତ୍କଣ୍ଠିତ ଅଛନ୍ତି । ମୋର ଅନୁମାନ ଯେ ପାଣ୍ଡବମାନେ ମଧ୍ୟ ନିଜର ଦେଶ ଦେଖିବା ପାଇଁ ବହୁତ ଉତ୍କଣ୍ଠିତ ହେଉଥିବେ, କାରଣ ଏମାନେ ଦେଶ ଛାଡ଼ିବାର ବହୁତ ଦିନ ହୋଇଗଲାଣି । କୁରୁକୁଳର ସ୍ତ୍ରୀମାନେ ମଧ୍ୟ ଦ୍ରୌପଦୀଙ୍କୁ ଦେଖିବା ପାଇଁ ବହୁତ ଉତ୍ସୁକ ହୋଇ ରହିଛନ୍ତି । ଏଣୁ ଡେରି ନ କରି ପତ୍ନୀସହିତ ପାଣ୍ଡବମାନଙ୍କୁ ବିଦା କରି ଦିଅନ୍ତୁ । ଆପଣଙ୍କର

ଅନୁମତି ମିଳିବା ମାତ୍ରେ ମୁଁ ସେଠାକୁ ସମାଗ୍ବର ପଠାଇ ଦେବି ଯେ ପାଣ୍ଡବମାନେ ଆସୁଛନ୍ତି । ଦ୍ରୁପଦ କହିଲେ—'ବିଦୁର ! ଆପଣଙ୍କ କହିବା ଠିକ୍ । ଏ ସମ୍ବନ୍ଧରେ ମୋତେ ମଧ୍ୟ ବଡ଼ ଆନନ୍ଦ ଲାଗୁଛି । ପାଣ୍ଡବମାନେ ନିଜରାଜ୍ୟକୁ ଯିବା ଉଚିତ ଏବଂ ଆବଶ୍ୟକ ମଧ୍ୟ । ତଥାପି ମୁଁ ଯିବା ପାଇଁ କିପରି କହିବି ? ଏମାନେ ଯେତେଦିନ ପର୍ଯ୍ୟନ୍ତ ଏଠାରେ ରହିବେ, ସେତିକି ଭଲ । କୁନ୍ତୀ, ପାଣ୍ଡବ, ଶ୍ରୀକୃଷ୍ଣ ଓ ବଳରାମଙ୍କ ସମ୍ମତି ହେଲେ ମୁଁ ଯିବାରେ ଆପତ୍ତି କରିବି ନାହିଁ ।' ଯୁଧିଷ୍ଠିର କହିଲେ—'ମହାରାଜ ! ଆମେ ସବୁ ଆପଣଙ୍କ ଅଧୀନ । ଆପଣ ହୃଦୟର ସହିତ ଯେଉଁ ଆଜ୍ଞା ଦେବେ, ଆମେ ତାହା ପାଳନ କରିବୁ ।' ଶ୍ରୀକୃଷ୍ଣ କହିଲେ—'ମୋ ବିଗ୍ବରରେ ପାଣ୍ଡବମାନେ ସେଠାକୁ ଯିବା ଉଚିତ । ପୁଣି ମଧ୍ୟ ମହାରାଜ ଦ୍ରୁପଦଙ୍କର ଯେପରି ଆଜ୍ଞା ହେବ ସେପରି କରିବା ଠିକ୍ ହେବ ।' ଦ୍ରୁପଦ କହିଲେ—'ପରମ ଶକ୍ତିଶାଳୀ ଯଦୁବୀର ପୁରୁଷୋତ୍ତମ ଯାହା କହୁଛନ୍ତି ତାହା ଠିକ୍ । ବାସୁଦେବ ଶ୍ରୀକୃଷ୍ଣଙ୍କର ପାଣ୍ଡବମାନଙ୍କ ଉପରେ ଯେତିକି କୃପା, ସେ ପାଣ୍ଡବମାନଙ୍କର ଯେତିକି ମଙ୍ଗଳକାମନା କରନ୍ତି, ସେତିକି ମୁଁ ମଧ୍ୟ କରିପାରୁ ନାହିଁ । ସ୍ୱୟଂ ଯୁଧିଷ୍ଠିର ମଧ୍ୟ କରିପାରୁ ନାହାନ୍ତି ।' ବିଦାୟ ଦେବା କଥା ଶେଷରେ ନିଶ୍ଚିତ ହେଲା ।

ଶ୍ରୀକୃଷ୍ଣ, କୁନ୍ତୀ, ପାଣ୍ଡବ ଓ ଦ୍ରୌପଦୀଙ୍କୁ ସଙ୍ଗରେ ନେଇ ବିଦୁର ବାରଣାବତ ନଗରକୁ ଆସିଲେ । ବିକର୍ଣ୍ଣ, ଚିତ୍ରସେନ, ଦ୍ରୋଣାଗ୍ବର୍ଯ୍ୟ ଆଦି ଆସି ସେମାନଙ୍କର ସ୍ୱାଗତ କଲେ ଏବଂ ଧୃତରାଷ୍ଟ୍ରଙ୍କ ଆଜ୍ଞାରେ ସେମାନେ ନିଜ ମହଲମାନଙ୍କରେ ରହିଲେ । କିଛିଦିନ ପରେ ଧୃତରାଷ୍ଟ୍ର ସେମାନଙ୍କୁ ଖାଣ୍ଡବପ୍ରସ୍ଥରେ ରାଜଧାନୀ ନିର୍ମାଣ କରି ରହିବାକୁ ଆଜ୍ଞା ଦେଲେ ଏବଂ ଅଧା ରାଜ୍ୟ ମଧ୍ୟ ଦେଇଦେଲେ । ପାଣ୍ଡବମାନେ ନିଜ ବାହୁବଳରେ ନିଜ ରାଜ୍ୟର ବିସ୍ତାର କଲେ ଏବଂ ସେମାନେ ସେଠାରେ ସୁଖପୂର୍ବକ ରହିବାକୁ ଲାଗିଲେ । ବିଦୁର ଧୃତରାଷ୍ଟ୍ରଙ୍କ ପାଖରେ ହିଁ ନିଜର କୁଡ଼ିଆରେ ରହି ନିଜର ଧର୍ମପତ୍ନୀଙ୍କ ସହିତ ପ୍ରେମପୂର୍ବକ ଭଗବାନଙ୍କ ଭଜନ କରିବାକୁ ଲାଗିଲେ ।

## (୩)

ଧର୍ମରେ କପଟ ପାଇଁ ଟିକିଏ ହେଲେ ସ୍ଥାନ ନାହିଁ । ବାହାର-ଭିତର ସ୍ୱଚ୍ଛତା ହିଁ ଧର୍ମର ପ୍ରଧାନ ଲକ୍ଷଣ । ଯେ ଭିତରେ ଗୋଟିଏ ପ୍ରକାର ଓ ବାହାରେ ଗୋଟିଏ ପ୍ରକାର, ଆମେ ତାଙ୍କୁ ଧର୍ମାତ୍ମା କହି ପାରିବା ନାହିଁ । ସମସ୍ତ ପ୍ରାଣୀଙ୍କର ସମାନ ସୁହୃଦ ହେଉଥିବା ଧର୍ମ ନିଜ ଭିତରେ କପଟ ଭଲା କିପରି ରଖି ପାରିବ ? ବିଦୁର ଧର୍ମରାଜ ଯୁଧିଷ୍ଠିରଙ୍କ ପାଇଁ ଯେପରି ଥିଲେ ସେପରି କୌରବଙ୍କ ପାଇଁ ମଧ୍ୟ ଥିଲେ । ସେ ପାଣ୍ଡବମାନଙ୍କୁ ଯେତିକି ପ୍ରେମ କରୁଥିଲେ, ସେତିକି କୌରବମାନଙ୍କୁ ମଧ୍ୟ କରୁଥିଲେ । ସେ ହିତ କଥା ନିଃସଂକୋଚରେ କହି ଦେଉଥିଲେ । କେହି ତାହା ମାନନ୍ତୁ ବା ନ ମାନନ୍ତୁ ସେଥିପ୍ରତି ତାଙ୍କର ଖାତିର ନ ଥିଲା । ସ୍ୱଷ୍ଟ କଥା କହିବାରେ ତାଙ୍କର ଟିକିଏ ହେଲେ ଭୟ ନ ଥିଲା । ଭୟ ତ ଅଧର୍ମର ହୁଏ, ଧର୍ମରେ ନାହିଁ । ବିଦୁରଙ୍କର ଜୀବନରେ ଆମେ ଏହି ସବୁ କଥାର ପୂର୍ଣ୍ଣତା ଦେଖିବାକୁ ପାଇବା ଯେ ସେ ଯାହାକିଛି କହୁଥିଲେ, ସ୍ୱଷ୍ଟ କହୁଥିଲେ; ତାଙ୍କୁ ଦୁର୍ଯ୍ୟୋଧନ ମଧ୍ୟ ଜାଣନ୍ତି ଏବଂ ଯୁଧିଷ୍ଠିର ମଧ୍ୟ ଜାଣନ୍ତି ଏବଂ କେହି ମଧ୍ୟ ତାଙ୍କଠାରୁ ନିଜର ସମ୍ବନ୍ଧ ତୁଟାଇ ପାରୁ ନ ଥିଲେ ।

ପାଣ୍ଡବମାନଙ୍କର ସମୃଦ୍ଧି ଏବଂ ସେମାନଙ୍କର ରାଜସୂୟ-ଯଜ୍ଞର ସଫଳତା ଦେଖି ଦୁର୍ଯ୍ୟୋଧନ ହୃଦୟରେ ଈର୍ଷାର ନିଆଁ ଜଳିବାକୁ ଲାଗିଲା । ବିଦୁରଙ୍କ ଅନୁପସ୍ଥିତିରେ ସେ ଧୃତରାଷ୍ଟ୍ରଙ୍କୁ ଓଲଟା-ସିଧା ବୁଝାଇଦେଇ ବାଜିମାରି ସେମାନଙ୍କ ସହିତ ଜୁଆ ଖେଳିବାର ଆଜ୍ଞା ପାଇଗଲା । ପରନ୍ତୁ ଧୃତରାଷ୍ଟ୍ର ଏକଥା ବିଦୁରଙ୍କ ଠାରୁ ଛପାଇ ପାରିଲେ ନାହିଁ । ତାଙ୍କ ଜୀବନରେ ଏହା ପୂର୍ବରୁ ଏପରି କୌଣସି ଅବସର ଆସି ନ ଥିଲା । ସେ ବିଦୁରଙ୍କ ପରାମର୍ଶ ନ ନେଇ କାହାରିକୁ କିଛି ଆଜ୍ଞା ଦେଉ ନ ଥିଲେ । ଆଜି ଜୁଆପାଇଁ ଆଜ୍ଞା ଦେଇ ସେ ଅନୁତାପ କଲେ ଏବଂ ଦୂତ ପଠାଇ ବିଦୁରଙ୍କୁ ତୁରନ୍ତ ଡାକି ଆଣିଲେ । ବିଦୁର ଆସି ଧୃତରାଷ୍ଟ୍ରଙ୍କୁ ସ୍ୱଷ୍ଟ କହିଦେଲେ ଯେ ମୁଁ କଦାପି ଜୁଆର ଅନୁମୋଦନ କରିପାରିବି ନାହିଁ । ଆପଣ ଏ କାମ କରି ବଡ଼ ଅନୁଚିତ କଲେ । ଏହାଦ୍ୱାରା ପାରସ୍ପରିକ

ବିରୋଧ ବଢ଼ିଯିବ ଏବଂ ବଂଶର ସତ୍ୟାନାଶ ହୋଇଯିବ । ଧୃତରାଷ୍ଟ୍ର ବିଦୁରଙ୍କ କଥାରେ ପ୍ରଭାବିତ ହୋଇ ଦୁର୍ଯ୍ୟୋଧନକୁ ଡକାଇଲେ ଏବଂ ଜୁଆ ନ ଖେଳିବା ପାଇଁ କହିଲେ । ପରନ୍ତୁ ସେ ଧୃତରାଷ୍ଟ୍ରଙ୍କ କଥା ମାନିଲା ନାହିଁ, ଜୁଆ ଖେଳ ହେଲା ଏବଂ ପାଣ୍ଡବ ହାରିବାକୁ ଲାଗିଲେ ।

ଜୁଆ ଖେଳ ମଝିରେ ବିଦୁର ଧୃତରାଷ୍ଟ୍ରଙ୍କୁ ବହୁତ ବୁଝାଇଲେ, ଅନେକ ଆଖ୍ୟାୟିକା ଶୁଣାଇଲେ ଏବଂ କହିଲେ ଯେ 'ଯେପରି ମରିବା ଲୋକକୁ ଔଷଧ ରୁଚେ ନାହିଁ, ସେପରି ଆପଣଙ୍କୁ ମଧ୍ୟ ନୀତି କଥା ପସନ୍ଦ ଲାଗୁ ନାହିଁ । ଦୁର୍ଯ୍ୟୋଧନ ଲୋଭ ହେତୁ ଅଧର୍ମ ଓ ଅନ୍ୟାୟ କରୁଛି । ଏ ଜୁଆ ନିଶାରେ ମାତାଲ ହୋଇ ଯାଇଛି । ଆପଣ ଅର୍ଜୁନକୁ ଆଜ୍ଞା ଦିଅନ୍ତୁ, ସେ ଏହାର ଦୁଷ୍ଟାମିକୁ ଦମନ କରିଦେବ । ଏ ସମଗ୍ର କୌରବ-କୁଳର ସଂହାର କରିବାକୁ ଚାହୁଁଛି । ଏହି ଜୁଆ ସବୁ ଝଗଡ଼ାର ମୂଳ । ଏବେ ଯୁଧିଷ୍ଠିରଙ୍କୁ ହରାଇ ଦୁର୍ଯ୍ୟୋଧନ ପ୍ରସନ୍ନ ହେଉଅଛି, ଏ କିଛି କ୍ଷଣ ପରେ କାନ୍ଦିବ । ମୁଁ ଆପଣଙ୍କୁ ପୁଣି ଚେତାଇ ଦେଉଛି ଯେ ଆପଣ ଜୁଆ ଖେଳ ବନ୍ଦ ନ କଲେ ଆପଣଙ୍କର ସର୍ବନାଶ ହୋଇଯିବ ।'

ଦୁର୍ଯ୍ୟୋଧନ ବିଦୁରଙ୍କ ସବୁ କଥା ଶୁଣୁଥିଲା । ସେ ବିଦୁରଙ୍କୁ କହିଲା— 'ମୁଁ ତୁମକୁ ଭଲଭାବେ ଜାଣେ । ତୁମେ ମୋରି ଦାନାରେ ବଞ୍ଚି ମୋରି ମନ୍ଦ କରୁଛ, ମୋରି ନିନ୍ଦା କରୁଛ । ତୁମେ ନିଜ ସ୍ୱାମୀଙ୍କ ସହିତ ଦ୍ରୋହ କରୁଛ, ତୁମକୁ ଏହାର ପାପ ଲାଗିବ । ମୋର ଆଶ୍ରିତ ହୋଇ ମଧ୍ୟ ତୁମେ ଶତ୍ରୁପରି କାମ କରୁଛ, ଏହା ତୁମର ନିର୍ଲଜ୍ଜ ପଣିଆ । ନିଜ ପ୍ରତି ମିତ୍ରତା ରଖୁଥିବା ଲୋକଙ୍କର ବିରୋଧ କରିବା ମୂର୍ଖର କାମ । ଶତ୍ରୁପକ୍ଷରେ ମିଶିଥିବା ଲୋକକୁ ଆମର ଏଠାରେ ରଖିବା ଅନୁଚିତ । ଏଣୁ ତୁମର ଯେଉଁଠାକୁ ଇଚ୍ଛା ସେଠାକୁ ଚାଲିଯାଅ ।' ବିଦୁର କହିଲେ—ଦୁର୍ଯ୍ୟୋଧନ ! ତୁ ଏବେ ବାଳକ । ଶୁଣିବାକୁ କଠୋର କିନ୍ତୁ ପରିଣାମରେ ସୁଖ ଦେଉଥିବା କଥାରେ ତୋର ନାରାଜ ହେବା ଅନୁଚିତ । ଦେଖ, ମୂଢ଼ତା କର ନାହିଁ । ନିଜର ହିତ-ଅହିତକୁ ବୁଝ । ଉପରେ ଉପରେ ମିଠାକଥା କହୁଥିବା ଲୋକ ବହୁତ ମିଳିବେ, ପରନ୍ତୁ ସଂସାରରେ ସଚ୍ଚା ହିତୈଷୀ ବିରଳ । କ୍ରୋଧ ସବୁଠାରୁ ବଡ଼ ଶତ୍ରୁ । ଲୋଭ ଧୁ ଧୁ ହୋଇ ଜଳୁଥିବା ନିଆଁପରି । ମୁଁ ଚାହୁଁଛି ଯେ କୌରବମାନଙ୍କ ଯଶ ବଢୁ । ସେମାନେ ଶାନ୍ତିରେ-ସୁଖରେ

ଧର୍ମ ବାଟରେ ଚାଲନ୍ତୁ । ମୁଁ ହାତ ଯୋଡ଼ି ତୁମକୁ ପ୍ରାର୍ଥନା କରୁଛି, ଭଗବାନ୍ ତୁମର କଲ୍ୟାଣ କରନ୍ତୁ । ତୁମେ ପାଣ୍ଡବଙ୍କ ପ୍ରତି ଏହି ଅନ୍ୟାୟ କର ନାହିଁ, ନ ହେଲେ ତୁମର ନାଶ ବେଶୀ ଦୂର ନୁହେଁ । ଦୁର୍ଯ୍ୟୋଧନ ବିଦୁରଙ୍କ କଥା ମାନିଲା ନାହିଁ, ଜୁଆ ଖେଳ ଚାଲିଲା । ଯୁଧିଷ୍ଠିର ଚାରିଭାଇ ସହିତ ନିଜକୁ ହାରିଗଲେ । ଦ୍ରୌପଦୀଙ୍କୁ ମଧ୍ୟ ବାଜିରେ ରଖି ହାରିଗଲେ ।

ଦୁର୍ଯ୍ୟୋଧନର ସାହସ ବଢ଼ି ଯାଇଥିଲା । ସେ ବିଦୁରଙ୍କୁ କହିଲା— 'ତୁମେ ଯାଇଁ ଦ୍ରୌପଦୀକୁ ସଭା ମଧ୍ୟକୁ ନେଇ ଆସ । ସେ ଅଭାଗିନୀ, ସେ ଆସି ମୋ ଘରେ ଦାସୀ ପରି ରହୁ, ଝାଡୁ ଲଗାଉ ।' ଦୁର୍ଯ୍ୟୋଧନ ବିଦୁରଙ୍କୁ ଗାଳି-ମନ୍ଦ ଦେଉଥିବା ବେଳେ ବିଦୁରଙ୍କ ଉପରେ ତାହାର କିଛି ପ୍ରଭାବ ପଡ଼ି ନ ଥିଲା । ପରନ୍ତୁ ଦ୍ରୌପଦୀ ସମ୍ବନ୍ଧରେ ଏପରି କଥା ଶୁଣି ସେ ଏଭଳି କଥା କହିଲେ ଯାହା ଦ୍ରୌପଦୀ ବାରମ୍ବାର କାନ୍ଦି କାନ୍ଦି ବ୍ୟଥିତ ହେଉଥିବାବେଳେ ଭୀଷ୍ମ ଓ ଦ୍ରୋଣଙ୍କ ମୁଖରୁ ମଧ୍ୟ ବାହାରି ନ ଥିଲା । ସେ ଦୁର୍ଯ୍ୟୋଧନକୁ କହିଲେ—ମୂଢ଼ ଦୁର୍ଯ୍ୟୋଧନ ! ତୁ କାହା ବିଷୟରେ ଏପରି କଥା କହୁଛୁ । କୌଣସି ସ୍ତ୍ରୀକୁ ଅପମାନ କରିବା ମନୁଷ୍ୟତାର ବିରୁଦ୍ଧ । ପୁଣି ଦ୍ରୌପଦୀ ତ ଯଜ୍ଞବେଦୀରୁ ଉତ୍ପନ୍ନ ସାକ୍ଷାତ୍ ଦେବୀ । ତୁ ସାପ ଲାଞ୍ଜରେ ହାତ ଦେଉଛୁ । ଏବେ ତୁ ଶୀଘ୍ର ଯମପୁରକୁ ହିଁ ଯିବୁ । ଦେଖ, ଦ୍ରୌପଦୀ କେବେ ତୋର ଦାସୀ ହୋଇପାରିବ ନାହିଁ । ଯୁଧିଷ୍ଠିରଙ୍କର ଦ୍ରୌପଦୀଙ୍କୁ ବାଜିରେ ଲଗାଇବାର କୌଣସି ଅଧିକାର ନ ଥିଲା । ନିଜକୁ ହାରିଯିବା ପରେ ଦ୍ରୌପଦୀଙ୍କ ଉପରେ ତାଙ୍କର କେଉଁ ସ୍ୱତ୍ୱ ଥିଲା ଯେ ତାଙ୍କୁ ବାଜିରେ ରଖିଲେ । ନିଜ ମୁହଁରୁ କେବେ କାହାରି ପ୍ରତି ଦୁର୍ବଚନ କରିବା ଉଚିତ ନୁହେଁ । ଦ୍ରୌପଦୀଙ୍କ ପ୍ରତି ଦୁର୍ବଚନ ପ୍ରୟୋଗ କରି ତୁ ନିଜର ପୁଣ୍ୟ ନଷ୍ଟ କରି ଦେଇଛୁ । ଏବେ ମଧ୍ୟ ସମ୍ଭାଳିଯା, ନ ହେଲେ ଅନର୍ଥ ହୋଇଯିବ । ଦୁର୍ଯ୍ୟୋଧନ ବିଦୁରଙ୍କ କଥା ମାନି ନ ଥିଲା । ଦ୍ରୌପଦୀଙ୍କୁ ଅଣାଗଲା ଏବଂ ଏହାପରେ ଯାହା କିଛି ହେଲା ତାହା ପ୍ରସିଦ୍ଧ ଅଟେ, ବିଦୁର ପାରୁପର୍ଯ୍ୟନ୍ତ ସେହି ଦୁର୍ଘଟଣାକୁ ବନ୍ଦ କରିବା ପାଇଁ ଚେଷ୍ଟା କରିଥିଲେ, ପରନ୍ତୁ ଯାହା ହେବାର ଥିଲା ତାହା ହିଁ ହେଲା !

ପାଣ୍ଡବମାନେ କୁନ୍ତୀ ଓ ଦ୍ରୌପଦୀଙ୍କ ସହିତ ବାରବର୍ଷ ବନବାସ ଓ

ଏକ ବର୍ଷ ଅଜ୍ଞାତବାସ ଯିବାକୁ ବାହାରିବା ବେଳେ ସେମାନେ ସଭାକୁ ଯାଇ ସମସ୍ତଙ୍କୁ ପ୍ରଣାମ କଲେ ଏବଂ ସମସ୍ତଙ୍କର ଅନୁମତି ନେଲେ । ସେ ସମୟରେ ସେମାନଙ୍କର କଲ୍ୟାଣ କାମନା ତ ସମସ୍ତେ କଲେ, ପରନ୍ତୁ ଏହି କଥା କେବଳ ବିଦୁରଙ୍କ ମନକୁ ଆସିଲା ଯେ କୁନ୍ତୀ ବୁଢ଼ୀ ହୋଇ ଗଲେଣି, ସେ ବନକୁ ଯିବା ଉଚିତ ନୁହେଁ । ସେ ପାଣ୍ଡବମାନଙ୍କୁ କହିଲେ– କୁନ୍ତୀ ସର୍ବଥା ପୂଜନୀୟା । ତାଙ୍କର ଅବସ୍ଥା ବନକୁ ଯିବାଯୋଗ୍ୟ ନୁହେଁ । ଏ ସର୍ବଦା ସୁଖରେ ରହି ଆସିଛନ୍ତି । ଏ ବନର ଦୁଃଖ ସହି ପାରିବେ ନାହିଁ । କୁନ୍ତୀଦେବୀ ମୋ ଘରେ ଆଦର ସତ୍କାର ସହ ରହନ୍ତୁ । ତୁମେ ମୋର ଏହି କଥା ମାନି ନିଅ । ଯାଅ, ଭଗବାନ ସର୍ବଦା ତୁମର ମଙ୍ଗଳ କରିବେ ।' ଯୁଧିଷ୍ଠିର କହିଲେ—'ନିଷ୍ପାପ ! ଆପଣ ଆମର ଗୁରୁ, ଆଦରଣୀୟ ଦାଦା, ଆମେ ସବୁ ଆପଣଙ୍କର ଅନୁଗାମୀ, ଆପଣଙ୍କ ଆଜ୍ଞା ଆମେ ସ୍ୱୀକାର କରୁଛୁ, ମାଆ କୁନ୍ତୀ ଏଠାରେ ରହିବେ । ଏବେ ଆପଣ ଆମ୍ଭମାନଙ୍କୁ କିଛି ଉପଦେଶ ଦିଅନ୍ତୁ ।'

ବିଦୁର କହିଲେ—'ତୁମେମାନେ ସବୁ ପ୍ରକାରେ ଯୋଗ୍ୟ, ତୁମର ପୁରୋହିତ ଧୌମ୍ୟ ବ୍ରହ୍ମଜ୍ଞାନୀ ଅଟନ୍ତି ଏବଂ ସେ ତୁମ ସହିତ ରହିବେ । ତୁମେମାନେ ସର୍ବଦା ସନ୍ତୁଷ୍ଟ, ଏଣୁ ମନୋମାଳିନ୍ୟର ସମ୍ଭାବନା ନାହିଁ । ତୁମେମାନେ ମେରୁ, ସାବର୍ଣ୍ଣୀ, ପରଶୁରାମ, କୃଷ୍ଣଦ୍ୱୈପାୟନ ଏବଂ ଭଗବାନ୍ ଶଙ୍କରଙ୍କଠାରୁ ଜ୍ଞାନ ତଥା ଧର୍ମର ଶିକ୍ଷା ଲାଭ କରିଛ । ଅସିତ ତୁମକୁ ଉପଦେଶ ଦେଇଛନ୍ତି ଏବଂ ଭୃଗୁ ଦୀକ୍ଷା ଦେଇଛନ୍ତି । ଦେବର୍ଷି ନାରଦ ସର୍ବଦା ଦେଖା-ରଖା କରୁଛନ୍ତି । ତୁମଠାରେ ସମସ୍ତ ସଦ୍‌ଗୁଣ ନିବାସ କରୁଛି । ତୁମକୁ ଆତ୍ମସମ୍ପତ୍ତି ପ୍ରାପ୍ତ ହୋଇଛି । ଅଧର୍ମ ଦ୍ୱାରା ଠିକିଗଲେ ମଧ୍ୟ ବ୍ୟଥିତ ହେବାର କିଛି କଥା ନାହିଁ । ଯେଉଁ ବସ୍ତୁ ତୁମଠାରୁ ଠକି ନିଆଯାଇଛି ତାହା କେତେଗୁଣ ହୋଇ ତୁମ ପାଖକୁ ଫେରି ଆସିବ । ଯାଅ, ତୁମର କଲ୍ୟାଣ ହେଉ ।' ମାଆ କୁନ୍ତୀ ବିଦୁରଙ୍କ ପାଖରେ ରହିଲେ ତଥା ଦ୍ରୌପଦୀ ଓ ପୁରୋହିତ ଧୌମ୍ୟଙ୍କ ସହିତ ପାଣ୍ଡବମାନେ ବନକୁ ପ୍ରସ୍ଥାନ କଲେ ।

ଧୃତରାଷ୍ଟ୍ର ପଚ୍ଚରିବାରୁ ବିଦୁର କହିଲେ ଯେ 'ଯୁଧିଷ୍ଠିର ନିଜର ଆଖି ବନ୍ଦ କରି ଯାଉଛନ୍ତି । ଏହାର ଅର୍ଥ ଯେ ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ବଡ଼ ସ୍ନେହ କରୁଥିଲେ । ଯଦି ସେ ଆଖି ଖୋଲି ଦେଖି ଦେବେ ତେବେ

ତୁମର ପୁତ୍ର ଭସ୍ମ ହୋଇ ଯାଇପାରେ । ଏଣୁ ସେ ଆଖି ବନ୍ଦ କରି ଯାଉଛନ୍ତି । ଭୀମସେନ ନିଜର ବିଶାଳ ବାହୁମାନ ଦେଖି ଦେଖି ଯାଉଛନ୍ତି । ସେ ବିଗ୍ଭର କରୁଥିଲେ ଯେ ବାହୁବଳରେ ମୋ ସମାନ ଆଉ କିଏ ଅଛି । ସେ ମନେ ମନେ ଯୁଦ୍ଧରେ ଘୋର କର୍ମ କରିବାର ସଂକଳ୍ପ କରୁଛନ୍ତି । ଅର୍ଜୁନ ପାଦରେ ବାଲି ଉଡ଼ାଇ ଉଡ଼ାଇ ଯାଉଛନ୍ତି । ଏହାର ଅଭିପ୍ରାୟ ଏହି ଯେ ଯୁଦ୍ଧ ସମୟରେ ଶତ୍ରୁମାନଙ୍କ ଉପରେ ଏହି ପ୍ରକାର ବାଣବର୍ଷା କରିବେ । ନକୁଳ ନିଜର ଶରୀରରେ ମାଟି ବୋଳି ଦେଇ ଯାଉଛନ୍ତି; କାରଣ ତାଙ୍କର ଶରୀର ତ ବହୁତ ସୁନ୍ଦର, ତାଙ୍କୁ ଦେଖି ସ୍ତ୍ରୀମାନେ ମୋହିତ ହେବେ ନାହିଁ । ସହଦେବ ନିଜ ମୁହଁରେ ମାଟି ବୋଳି ଦେଇଥିଲେ; କାରଣ ତାଙ୍କୁ କେହି ଚିହ୍ନି ପାରିବେ ନାହିଁ । ସେ ବନକୁ ଯିବାବେଳେ ଟିକେ ଲଜ୍ଜିତ ପରି ହେଉଛନ୍ତି । ଦ୍ରୌପଦୀ ଦୁଃଶାସନ ଧରିଥିବା ବାଳକୁ ଖୋଲାକରି ଏହା କହୁଛନ୍ତି ଯେ ଆଜିଠାରୁ ଚଉଦ ବର୍ଷ ପରେ କୌରବ କୁଳର ସ୍ତ୍ରୀମାନେ ଏପରି ଦୁର୍ଗତି ଭୋଗିବେ । ଧୌମ୍ୟ ଭୟଙ୍କର ଯାମ୍ୟ-ମନ୍ତ୍ର ଉଚ୍ଚାରଣ କରି କରି ଯାଉଛନ୍ତି; କାରଣ କୌରବଙ୍କ ପୁରୋହିତ ମଧ୍ୟ ଏମାନେ ମରିଯିବା ପରେ ଏହି ପ୍ରକାର ମନ୍ତ୍ରପାଠ କରିବେ ।'

ବିଦୁର ପୁଣି କହିଲେ—'ମହାରାଜ ! ପ୍ରଜା ସବୁ ବିକ୍ଷୁବ୍ଧ ହୋଇ ଉଠିଛନ୍ତି । ସବୁ ଲୋକ କୌରବମାନଙ୍କୁ ଗାଳିଦେଉଛନ୍ତି, ସେମାନଙ୍କର ଅନ୍ୟାୟକୁ ନିନ୍ଦା କରୁଛନ୍ତି ଏବଂ ପାଣ୍ଡବମାନଙ୍କ ସହିତ ସହାନୁଭୂତି ପ୍ରକଟ କରୁଛନ୍ତି । ମହାରାଜ ! ଆଜିକାଲି ପ୍ରକୃତି ଅତି କ୍ଷୁବ୍ଧ । ଆଜିର ଅପଶକୁନମାନ ଦେଖି ବଡ଼ ଆଶଙ୍କା ହେଉଛି । ଜାଣେନା ସଂସାରରେ କ'ଣ ଘଟିବ ।' ବିଦୁର ଏହି ପ୍ରକାର କହୁଥିଲେ, ଏହି ସମୟରେ ବ୍ରାହ୍ମୀ କାନ୍ତି ଧାରଣ କରି ଦେବର୍ଷିଶ୍ରେଷ୍ଠ ନାରଦ ସଭାରେ ଆସି ପହଞ୍ଚିଗଲେ ଏବଂ ସେ ସମସ୍ତଙ୍କ ଆଗରେ ଉଚ୍ଚସ୍ୱରରେ କହିଲେ—'ଲୋକମାନେ! ଶୁଣି ରଖ ! କାନ ଖୋଲି ଶୁଣିଥାଅ ! ଆଜିଠାରୁ ଚଉଦ ବର୍ଷ ପରେ ଦୁର୍ଯ୍ୟୋଧନର ଅପରାଧରେ ଏବଂ ଭୀମସେନ ତଥା ଅର୍ଜୁନଙ୍କ ବଳରେ ସମ୍ପୂର୍ଣ୍ଣ କୌରବ କୁଳର ନାଶ ହୋଇଯିବ ।' ଏତିକି କହି ଖୁବ୍ ଶୀଘ୍ର ଅନ୍ତର୍ଧାନ ହୋଇଗଲେ ଏବଂ ସମସ୍ତ ସଭାସଦ ଦୁର୍ଯ୍ୟୋଧନ, କର୍ଣ୍ଣ ଓ ଶକୁନି ସମସ୍ତେ ସ୍ତବ୍ଧ ହୋଇଗଲେ ।

ଦିନେ ଧୃତରାଷ୍ଟ୍ର ବିଦୁରଙ୍କୁ ଡକାଇ ପଚାରିଲେ—କ'ଣ କଲେ ମୋର ଉପକାର ହୋଇପାରିବ ? ଯାହା ତ ହେବାର ଥିଲା, ହୋଇଗଲା । ଏବେ ମୋର କର୍ତ୍ତବ୍ୟ କ'ଣ, ତାହା କହି ଦିଅ । ପ୍ରଜା ଆମ ବିରୁଦ୍ଧ ହୋଇଯାଇଛନ୍ତି, ସେମାନଙ୍କର ପ୍ରେମ କି ପ୍ରକାରରେ ପ୍ରାପ୍ତ କରାଯାଇ ପାରିବ ? ବିଦୁର କହିଲେ—'ମହାରାଜ ! ଧର୍ମ ହିଁ ଅର୍ଥ, କାମ ଓ ମୋକ୍ଷର ମୂଳ । ଆପଣଙ୍କ ପୁତ୍ର ବଡ଼ ଅନ୍ୟାୟ କରିଛନ୍ତି । ସେମାନେ ଧର୍ମାତ୍ମା ଯୁଧିଷ୍ଠିରଙ୍କୁ ଛଳରେ ଜିଣିଛନ୍ତି, ଏହି କୁକର୍ମର ଆପଣ ପ୍ରାୟଶ୍ଚିତ୍ତ କରନ୍ତୁ, ପାଣ୍ଡବଙ୍କ ସମ୍ପତ୍ତି ସେମାନଙ୍କୁ ଫେରେଇ ଦିଅନ୍ତୁ । ଶକୁନିକୁ ତିରସ୍କାର କରନ୍ତୁ । ପାଣ୍ଡବମାନଙ୍କୁ କେହି ଜିତି ପାରିବେ ନାହିଁ । ଆପଣ ଯଦି କୌରବ ଓ ପାଣ୍ଡବ ଦୁଇ ବଂଶର ମଙ୍ଗଳ ଚାହାନ୍ତି ତେବେ ଦୁର୍ଯ୍ୟୋଧନକୁ ବାଧ୍ୟ କରନ୍ତୁ କି ସେ ପାଣ୍ଡବମାନଙ୍କ ସହିତ ନିଷ୍କପଟ ସମ୍ପର୍କ ରଖିବ, ନଚେତ୍ ତାହାକୁ ବନ୍ଦୀ କରି ଦିଅନ୍ତୁ ! ଦୁର୍ଯ୍ୟୋଧନକୁ କଏଦୀ କରିଦେଲେ ପାଣ୍ଡବ ସନ୍ତୁଷ୍ଟ ହୋଇଯିବେ ଏବଂ ସେମାନେ ପୁଣି ଧର୍ମ ଅନୁସାରେ ପୃଥ୍ୱୀର ଶାସନ କରିବେ ତଥା ଶରଣ ଗଲେ ଦୁର୍ଯ୍ୟୋଧନକୁ ଛାଡ଼ି ଦେବେ । ଦୁଃଶାସନ ନିଜର ପାପ ପାଇଁ ପ୍ରାୟଶ୍ଚିତ୍ତ କରିବ ଏବଂ ପରିପୂର୍ଣ୍ଣ ସଭାରେ ଦ୍ରୌପଦୀ ଓ ଭୀମସେନଙ୍କୁ କ୍ଷମା ମାଗିବ । କର୍ଣ୍ଣ ନିଜ ମନରୁ ଦୁର୍ଭାବନା ତ୍ୟାଗ କରିନେବ ଏବଂ ଶକୁନିକୁ ଏଠାରୁ ବାହାର କରି ଦିଆଯିବ । ଆପଣ ସାନ୍ତ୍ୱନା ଦେଇ ଯୁଧିଷ୍ଠିରଙ୍କର ରାଜ୍ୟାଭିଷେକ କରିବେ । ବାସ, ଏହାହିଁ ପ୍ରଜାପ୍ରେମ ପ୍ରାପ୍ତ କରିବାର ଉପାୟ । ଏହାଦ୍ୱାରା ଆପଣଙ୍କୁ ଶାନ୍ତି ମିଳିବ ଏବଂ ଆପଣଙ୍କର ମନୋରଥ ସିଦ୍ଧି ହେବ ।' ବିଦୁରଙ୍କ ସ୍ପଷ୍ଟ ବାଣୀ ଶୁଣି ଧୃତରାଷ୍ଟ୍ର ଜଳି ଉଠିଲେ । ସେ କହିଲେ—'ବିଦୁର ! ତୁମେ ପାଣ୍ଡବଙ୍କ ପକ୍ଷପାତ କରୁଛ । ତୁମେ ମୋର ଭଲ କରିବାକୁ ଚାହୁଁ ନାହଁ । ଧର୍ମ ଅନୁସାରେ ପାଣ୍ଡବମାନେ ମୋର ପୁତ୍ର, କିନ୍ତୁ ଦୁର୍ଯ୍ୟୋଧନ ମୋର ଶରୀରରୁ ଜନ୍ମ ହୋଇଛି, ଭଲା ମୁଁ ମୋର ନିଜ ପୁଅକୁ କିପରି ବନ୍ଦୀ କରିଦେଇ ପାରିବି ? ଅନ୍ୟମାନଙ୍କ ପାଇଁ ଶରୀର ତ୍ୟାଗର ଉପଦେଶ ଦେବା ସମଦର୍ଶୀର କାମ ନୁହେଁ । ତୁମେ ମୋତେ ମନ୍ଦ ପରାମର୍ଶ ଦେଇ ସ୍ପଷ୍ଟରୂପରେ ମୋର ହାନି କରିବାକୁ ଇଚ୍ଛା କରୁଛ । ଏବେ ତୁମେ ଚାହିଁଲେ ଏଠାରେ ରୁହ ବା ନ ରୁହ । ମୋର ତୁମଠାରେ କୌଣସି ଆବଶ୍ୟକତା

ନାହିଁ । ଏତିକି କହି ଧୃତରାଷ୍ଟ୍ର ରାଣୀବାସକୁ ଚାଲିଗଲେ ଏବଂ ବିଦୁର ଏହା ବିଚାର କଲେ ଯେ ଏବେ ଏହି ଘର ଧ୍ୱଂସ ହେବାକୁ ଯାଉଛି, ତେଣୁ ସେ ପାଣ୍ଡବମାନଙ୍କ ପାଖକୁ ଯିବା ପାଇଁ ବେଗଗାମୀ ଘୋଡ଼ାଯୁକ୍ତ ରଥରେ ଚଢ଼ି ଯାତ୍ରା କଲେ ।

ପାଣ୍ଡବମାନେ ଦଣ୍ଡାୟମାନ ହୋଇ ବିଦୁରଙ୍କୁ ସ୍ୱାଗତ କଲେ ଏବଂ ତାଙ୍କୁ ଗୋଟିଏ ସୁନ୍ଦର ଆସନରେ ବସାଇ ସମ୍ମାନ କଲେ । ଯୁଧିଷ୍ଠିର ପଚାରିବା ପରେ ବିଦୁର ଧୃତରାଷ୍ଟ୍ରଙ୍କ କଥା କହିଲେ ଏବଂ ଏହା ମଧ୍ୟ କହିଲେ ଯେ 'ଏବେ ମୁଁ ଧୃତରାଷ୍ଟ୍ରଙ୍କ ନିକଟରେ ରହିବାର ଆବଶ୍ୟକତା ନାହିଁ । ଏଣୁ ମୁଁ ଚାଲିଆସିଲି । ତାଙ୍କ ହୃଦୟ ମୋହ-ମମତାରେ କଳୁଷିତ ହୋଇଯାଇଛି । ସେ ଧର୍ମକଥା, ହିତ କଥା ଶୁଣିବାକୁ ମଧ୍ୟ ଚାହାନ୍ତି ନାହିଁ । ଏପରି ଜଣାଯାଉଛି ଯେ କୌରବମାନଙ୍କର ନାଶ ନିକଟ ହୋଇଗଲାଣି । ଯୁଧିଷ୍ଠିର ! ଏହି ଆପତ୍ତିରେ ବ୍ୟସ୍ତ ହେବାର କିଛି ନାହିଁ । ଯେଉଁ ପୁରୁଷ ଶତ୍ରୁମାନଙ୍କ ଦ୍ୱାରା ଦିଆଯାଇଥିବା କ୍ଳେଶକୁ ଧୀରତାର ସହିତ ସହିଯାଏ ଏବଂ କ୍ଷମାର ସାହାଯ୍ୟ ନେଇ ନିଜର ଅନୁକୂଳ ସମୟର ଅପେକ୍ଷା କରୁଥାଏ, ତାକୁ ଭବିଷ୍ୟତରେ ନିଶ୍ଚୟ ସୁଖ ମିଳିବ । ଯେ ଭଲ ସମୟରେ, ଭୋଗ ସମୟରେ ଏକୁଟିଆ ସୁଖ ଭୋଗ କରେ ନାହିଁ, ନିଜର ସହାୟକମାନଙ୍କୁ ମଧ୍ୟ ସମାନଭାବରେ ସେମାନଙ୍କ ଅଂଶ ଦିଏ, ତାହାକୁ ବିପଦ ସମୟରେ, ଦୁଃଖ ସମୟରେ ମଧ୍ୟ ଏକୁଟିଆ ସେହି ଭାର ଉଠାଇବାକୁ ପଡ଼େ ନାହିଁ । ସେଥିରୁ ଭାଗ ନେବା ଲୋକ ମଧ୍ୟ ମିଳି ଯାଆନ୍ତି । ସହାୟତା ପାଇବାର ଏହା ହେଉଛି ଶ୍ରେଷ୍ଠ ଉପାୟ । ସାହାଯ୍ୟକାରୀ ମିଳିଗଲେ ସବୁକିଛି ମିଳିଗଲା ବୋଲି ଭାବିବା ଉଚିତ । ନିଜକୁ ସବୁଠାରୁ ଛୋଟ ଓ ନମ୍ର କରି ରଖିବାରେ କଲ୍ୟାଣ ହୁଏ । ଏହା ଦ୍ୱାରା ରାଜାମାନଙ୍କର ଅଭିବୃଦ୍ଧି ହୁଏ ।' ଏହି ପ୍ରକାର ବିଦୁର ପାଣ୍ଡବମାନଙ୍କୁ ଉପଦେଶ ଦେଉଥିଲେ ।

ଏପରି ଦେଖାଯାଏ ଯେ ସ୍ୱାର୍ଥୀ ଲୋକ ମଧ୍ୟ ନିଃସ୍ୱାର୍ଥ ବ୍ୟକ୍ତିଙ୍କ ଉପରେ ଅଧିକ ବିଶ୍ୱାସ କରନ୍ତି । ମଦ୍ୟପକୁ ଯଦି ତାହାର ସ୍ତ୍ରୀକୁ ଅନ୍ୟ କାହାରି ପାଖରେ ରଖିବାକୁ ପଡ଼େ ତେବେ ସେ ମଦ୍ୟପଙ୍କ ପାଖରେ ରଖେ ନାହିଁ, ମଦ୍ୟପାନ କରୁ ନଥିବା ଲୋକକୁ ବିଶ୍ୱାସ କରେ । ବେଇମାନ

ଲୋକ ମଧ୍ୟ ନିଜର ଜମା ଇମାନଦାର ଲୋକଙ୍କ ନିକଟରେ ରଖେ। ଏହାର କାରଣ ଏହି ଯେ, ତାହାର ପୁଅ ତାକୁ ଠକି ଦେଇପାରେ। କିନ୍ତୁ ବିଦୁରଙ୍କ ଠାରୁ ଠକାମିର କୌଣସି ସମ୍ଭାବନା ନାହିଁ । ଏଣୁ ବିଦୁର ଚାଲିଯିବା ପରେ ଧୃତରାଷ୍ଟ୍ର ଅନୁତାପ କଲେ। ସେ ବିଚାର କଲେ ଯେ ବିଦୁରଙ୍କ ସହାୟତାରେ ପାଣ୍ଡବମାନଙ୍କର ବିଶେଷ ଉନ୍ନତି ହେବ। ମୋର ପୁଅମାନଙ୍କର ବଡ଼ ଅନିଷ୍ଟ ହେବ। ସନ୍ଧି ଓ ବିଗ୍ରହ ନୀତିକୁ ଜାଣିଥିବା କେହି ଆମ ପକ୍ଷରେ ରହିବେ ନାହିଁ । ସେ ସଭାଦ୍ୱାରକୁ ଆସୁ ଆସୁ ଅଚେତ ହୋଇଗଲେ। ସଂଜୟ ଆସି ତାଙ୍କୁ ସମ୍ଭାଳି ନେଲେ। କିଛି ସମୟ ପରେ ଧୃତରାଷ୍ଟ୍ରଙ୍କର ଚେତା ଆସିଲା ।

ଧୃତରାଷ୍ଟ୍ର ସଞ୍ଜୟଙ୍କୁ କହିଲେ—'ସଞ୍ଜୟ ! ବିଦୁର ମୂର୍ତ୍ତିମାନ୍ ଧର୍ମ। ସେ ମୋର ପ୍ରିୟ ଭାଇ। ତାଙ୍କ ବ୍ୟତୀତ ମୋର ମନ ଛଟପଟ ହୋଇ ଯାଉଛି। ମୋର ହୃଦୟ ଫାଟି ଯାଉଛି।' କରୁଣ ସ୍ୱରରେ ବିଳାପ କରି ଧୃତରାଷ୍ଟ୍ର ପୁଣି କହିଲେ—'ବିଦୁର କୁଆଡ଼େ ଚାଲିଗଲେ ? ତାଙ୍କର ଅନିଷ୍ଟ ଆଶଙ୍କାରେ ମୁଁ ବଡ଼ ବ୍ୟାକୁଳ ହୋଇଯାଉଛି। ସେ ଜୀବିତ ଅଛନ୍ତି ତ ? ମୁଁ ବଡ଼ ପାପୀ। କ୍ରୋଧର ଅଧୀନ ହୋଇ ମୁଁ ମୋର ପ୍ରିୟ ଭାଇକୁ ତ୍ୟାଗ କରିଦେଲି। ସେ ସର୍ବଦା ମୋର ଉପକାର କରିଛନ୍ତି, କିନ୍ତୁ ମୁଁ ଏତେ ନୀଚ ଯେ ତାଙ୍କର ବିନା ଅପରାଧରେ ମୁଁ ବାହାର କରିଦେଲି। ସଞ୍ଜୟ ! ତୁମେ ଶୀଘ୍ର ଯାଇ ବିଦୁରଙ୍କୁ ନେଇ ଆସ। ନ ହେଲେ ମୁଁ ପ୍ରାଣ ତ୍ୟାଗ କରିବି।' 'ଯେ ଆଜ୍ଞା' କହି ସଂଜୟ ସେହି ସମୟରେ ପ୍ରସ୍ଥାନ କଲେ।

ସଂଜୟ କାମ୍ୟକବନକୁ ଯାଇ ବିଦୁରଙ୍କ ନିକଟରେ ଧୃତରାଷ୍ଟ୍ରଙ୍କ ସ୍ଥିତି ବର୍ଣ୍ଣନା କଲେ ଏବଂ ଅନୁରୋଧ କଲେ ଯେ ଶୀଘ୍ର ଯାଇ ତାଙ୍କ ପ୍ରାଣ ରକ୍ଷା କରନ୍ତୁ। ବିଦୁରଙ୍କ ମନରେ କୌଣସି ମନ୍ଦଭାବନା ନ ଥିଲା। ସେ ପାଣ୍ଡବମାନଙ୍କର ଅନୁମତି ନେଇ ଶୀଘ୍ର ସେଠାରୁ ଚାଲି ଆସିଲେ। ସେ ଆସିବାରୁ ଧୃତରାଷ୍ଟ୍ର ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ କହିଲେ—'ବିଦୁର ! ତୁମର ହୃଦୟ ଶୁଦ୍ଧ, ଏହା ମୋର ସୌଭାଗ୍ୟ ଯେ ତୁମେ ମୋ ପାଖରେ ରହିଛ। ମୁଁ ତୁମର ଅପରାଧ କରିଛି, ତୁମକୁ ବହୁତ କଟୁବଚନ କହିଛି, ତାହା ଭୁଲି ଯାଅ ଏବଂ ମୋତେ କ୍ଷମା କର।' ଧୃତରାଷ୍ଟ୍ର ବିଦୁରଙ୍କୁ ନିଜ କୋଳକୁ ଭିଡ଼ି ନେଲେ ଏବଂ ମସ୍ତକ ଆଘ୍ରାଣ କରି ବଡ଼ ପ୍ରେମ ଜଣାଇଲେ।

ବିଦୁର କହିଲେ—'ରାଜନ୍ ! ଆପଣ କିପରି କଥା କହୁଛନ୍ତି । ମୋ ପ୍ରତି ଆପଣଙ୍କର କ'ଣ କିଛି ଅପରାଧ ହୋଇପାରେ ? ଆପଣ ମୋର ପରମ ଗୁରୁ । ଆପଣଙ୍କ ପାଇଁ ଶୀଘ୍ର ମୁଁ ଏଠାକୁ ଚ୍ଚଳି ଆସିଛି । ପାଣ୍ଡବ ଓ କୌରବ ଦୁହେଁ ମୋ ପାଇଁ ସମାନ ତଥାପି ପାଣ୍ଡବମାନଙ୍କର ଅବସ୍ଥା ବର୍ତ୍ତମାନ ଭଲ ନାହିଁ । ଏଥିପାଇଁ ବାରମ୍ବାର ମୋ ଦୃଷ୍ଟି ସେମାନଙ୍କ ଉପରକୁ ଯାଉଛି ଏବଂ ଏହା ହିଁ ଉଚିତ । ଯଦି ଆପଣ ସେମାନଙ୍କ ପ୍ରତି ସ୍ନେହଭାବ ରଖିପାରନ୍ତେ ତେବେ କେତେ ଭଲ ହୁଅନ୍ତା ।' ଧୃତରାଷ୍ଟ୍ର ପ୍ରସନ୍ନ ହୋଇଗଲେ ଏବଂ ବିଦୁର ହସ୍ତିନାପୁରରେ ରହିବାକୁ ଲାଗିଲେ ।

❀❀❀

## (୪)

ଧର୍ମର ବ୍ୟାବହାରିକ ରୂପ ହେଉଛି ସଦ୍‌ବ୍ୟବହାର । ସଦ୍‌ବ୍ୟବହାର ଏକ ପ୍ରକାରର ହୁଏ ନାହିଁ, ତାହା ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ପାଇଁ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଦେଶରେ ଭିନ୍ନ ଭିନ୍ନ ପ୍ରକାରର ହୋଇଥାଏ । ଏହାର ଲକ୍ଷ୍ୟ ହେଉଛି, ମନୁଷ୍ୟ ଯେଉଁଠାରେ ଅଛି, ସେଠାରୁ ଉନ୍ନତି ପଥରେ ଯାଇ ଯାଇ ନିଜର ଲକ୍ଷ୍ୟ ଅର୍ଥାତ୍ ଧର୍ମର ମୂଳ ସ୍ୱରୂପରେ ପହଞ୍ଚିଯାଉ । ଗୋଟିଏ ବ୍ୟକ୍ତିକୁ ଅନ୍ୟ ଗୋଟିଏ ବ୍ୟକ୍ତି ସହିତ ଭିନ୍ନ ଭିନ୍ନ ସମୟରେ ବିଭିନ୍ନ ପ୍ରକାର ବ୍ୟବହାର କରିବାକୁ ପଡ଼େ । ସେଇ ସବୁରେ ଧର୍ମକୁ ରକ୍ଷା କରିବା—ସେଇ ସବୁଥିରେ ଧର୍ମ ସହିତ ରହିବା ବହୁତ କଠିନ ହୁଏ । ସାଧାରଣ ଲୋକ ସେଇ ବ୍ୟବହାରରେ କେଉଁ ପ୍ରକାର ଧର୍ମ ରହେ ସେ କଥା ବୁଝି ପାରନ୍ତି ନାହିଁ । ଜାଣନ୍ତି ବି ନାହିଁ । ଏଣୁ ଏହା କହିବାକୁ ପଡ଼ିବ ଯେ ଧର୍ମର ବାସ୍ତବ ସ୍ୱରୂପ ଧର୍ମ ହିଁ ଜାଣନ୍ତି ଏବଂ ଯେତେବେଳେ ସେ ବିଦୁର ରୂପରେ ଅବତୀର୍ଣ୍ଣ ହୋଇଛନ୍ତି ତେବେ ତାଙ୍କରି ଦ୍ୱାରା ସବୁ ପ୍ରକାର ନୀତିମାନଙ୍କର ରହସ୍ୟ ଉଦ୍‌ଘାଟନ ହେବା ଉଚିତ ଓ ହୋଇଅଛି ମଧ୍ୟ । 'ବିଦୁର ନୀତି' ସହିତ ସମସ୍ତେ ପରିଚିତ ।

ପାଣ୍ଡବମାନଙ୍କର ବାର ବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ ସମାପ୍ତ ହୋଇ ସାରିଥିଲା । ସେମାନେ ବିରାଟ ନଗରରେ ପ୍ରକଟ ହୋଇ ସାରିଥିଲେ ଏବଂ ଦୁଇ ପକ୍ଷରୁ ଯୁଦ୍ଧ ପାଇଁ ପ୍ରସ୍ତୁତି ଜୋର୍‌ସୋର୍‌ରେ

ହେଉଥିଲା । ଧୃତରାଷ୍ଟ୍ର ସଂଜୟଙ୍କୁ ଯୁଧିଷ୍ଠିରଙ୍କ ନିକଟକୁ ଏହା ବୁଝାଇବା ପାଇଁ ପଠାଇଥିଲେ ଯେ ଯୁଦ୍ଧ କରିବା ଅଧର୍ମ ଅଟେ, ସେମାନେ କୌଣସି ପ୍ରକାର ଯୁଦ୍ଧରୁ ବିରତ ହୋଇଯିବେ । ସେହି ଦିନ ସଂଜୟ ଯୁଧିଷ୍ଠିରଙ୍କ ନିକଟରୁ ଫେରି ଧୃତରାଷ୍ଟ୍ରଙ୍କ ନିକଟକୁ ଆସିଲେ ଏବଂ ସେ ଯୁଧିଷ୍ଠିରଙ୍କୁ ନିର୍ଦ୍ଦୋଷ କହିବାକୁ ଯାଇ ଏହା ଜଣାଇଦେଲେ ଯେ ଏବେ ଯୁଦ୍ଧ ହେବା ଅନିବାର୍ଯ୍ୟ। ଯଦି ସେମାନଙ୍କୁ କିଛି ଦିଆ ନ ଯାଏ ସେମାନେ ଯୁଦ୍ଧ କରିବାକୁ ବାଧ୍ୟ ହେବେ ଏବଂ ଏଥିରେ ସେମାନଙ୍କର କିଛି ଦୋଷ ନାହିଁ। ଯୁଧିଷ୍ଠିର ଆପଣଙ୍କ ପାଇଁ ଓ ସମସ୍ତଙ୍କ ପାଇଁ ଯେଉଁ ସନ୍ଦେଶ କହିଛନ୍ତି, ତାହା ମୁଁ କାଲି ସଭାରେ ଶୁଣାଇବି, କାରଣ ମୁଁ ଆଜି ବଡ଼ କ୍ଳାନ୍ତ । ଧୃତରାଷ୍ଟ୍ରଙ୍କ ଅନୁମତି ନେଇ ସଂଜୟ ଚ୍ଛଲିଗଲେ ।

ସଂଜୟ ଚ୍ଛଲିଯିବା ପରେ ଧୃତରାଷ୍ଟ୍ର ବଡ଼ ଚିନ୍ତାରେ ପଡ଼ିଗଲେ । ସେ ଦ୍ୱାରପାଳକୁ ପଠାଇ ବିଦୁରଙ୍କୁ ଡକାଇଲେ । ବିଦୁର ଶୀଘ୍ର ଧୃତରାଷ୍ଟ୍ରଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ବଡ଼ ନମ୍ରତାରେ କହିଲେ—'ମହାରାଜ ! ମୁଁ ଆପଣଙ୍କର କି ସେବା କରିପାରିବି ? ମୋ ଯୋଗ୍ୟ ସେବା ବତାଇ ଦିଅନ୍ତୁ ।' ଧୃତରାଷ୍ଟ୍ର କହିଲେ—'ବିଦୁର ! ଏବେ ସଂଜୟ ମୋତେ ବହୁତ କିଛି କହି ଶୁଣାଇ ଘରକୁ ଗଲା । ସକାଳେ ସଭାରେ ଯୁଧିଷ୍ଠିରଙ୍କ ସନ୍ଦେଶ ଶୁଣାଇବ । ଏବେ ମୁଁ ଜାଣେ ନାହିଁ ଯେ ଯୁଧିଷ୍ଠିର କି ସନ୍ଦେଶ ପଠାଇଛନ୍ତି । ଏହି ଚିନ୍ତାରେ ମୋତେ ନିଦ ନାହିଁ ଏବଂ ମୋ ଶରୀର ଜଳି ଯାଉଛି । ଧର୍ମ ଓ ଅର୍ଥ ବିଷୟରେ ତୁମ ପରି ଜାଣିବା ଲୋକ ଆଉ କେହି ନାହିଁ । ତୁମେ ମୋର ମଙ୍ଗଳ କଥା କୁହ । ମୋ ଇନ୍ଦ୍ରିୟମାନେ ଦୁର୍ବଳ ହୋଇ ଯାଉଛନ୍ତି । ମୋତେ ଚିନ୍ତା କଷ୍ଟ ଦେଉଛି । ଏପରି କିଛି ଉପାୟ କର ଯେ ମୋର ଚିତ୍ତ ଶାନ୍ତ ହୋଇଯିବ ।'

ବିଦୁର କହିଲେ—'ମହାରାଜ ! ସାଧାରଣ ପୁରୁଷମାନଙ୍କର ନିଦ ନ ହେବାର ଅନେକ କାରଣ ଅଛି । ଯାହା ଉପରେ ବଳବାନ ପୁରୁଷ ଆକ୍ରମଣ କରିବାର ଥାଏ, ଯାହାର ସର୍ବସ୍ୱ ହରଣ କରାଯାଇଥାଏ, ଯେ କାମୀ, ଚ୍ଛୋର, ସେମାନଙ୍କୁ ନିଦ ଆସେ ନାହିଁ । ଯେ କାହାରି ସମ୍ପତ୍ତି ମାରିନେବା ପାଇଁ ଇଚ୍ଛା କରୁଥାଏ, ତାହାକୁ ମଧ୍ୟ ନିଦ ଆସିବ ନାହିଁ । ଏଥି ମଧ୍ୟରୁ କୌଣସି ଦୋଷଦୁର୍ବଳତା ଆପଣଙ୍କ ଠାରେ ଆସି ନାହିଁ ତ ? ମହାରାଜ !

ଯଦି ଏ ପ୍ରକାର ଦୋଷ ଆପଣଙ୍କ ଠାରେ ନଥାଏ ତେବେ ଆପଣ ସୁଖପୂର୍ବକ ଶୋଇ ପାରିବେ । ଧୃତରାଷ୍ଟ୍ର କହିଲେ—'ବିଦୁର ! ତୁମେ ବଡ଼ ବିଦ୍ୱାନ୍, ବୁଦ୍ଧିମାନ୍ ଓ ସମ୍ମାନର ପାତ୍ର । ମୁଁ ତୁମର କଲ୍ୟାଣକାରୀ କଥା ଶୁଣିବାକୁ ଚାହୁଁଛି । ତୁମେ ମୋତେ ନୀତି କଥା ଶୁଣାଅ ।'

ବିଦୁର କହିଲେ—'ରାଜା ! ଆପଣ ନୀତି ବିରୁଦ୍ଧ ଆଚରଣ କରିଛନ୍ତି । ଯୁଧିଷ୍ଠିର ସର୍ବଦା ରାଜ୍ୟର ଯୋଗ୍ୟ, ତାଙ୍କୁ ଆପଣ ବାହାର କରି ଦେଇଛନ୍ତି; ଏବଂ ଆପଣଙ୍କର ରାଜା ହେବାର ଲକ୍ଷଣ ବିଲକୁଲ ନାହିଁ, ତଥାପି ଆପଣ ରାଜା ହୋଇ ବସିଛନ୍ତି । ଆପଣ ରାଜ୍ୟଶାସନ କିପରି କରି ପାରିବେ? ଦୁର୍ଯ୍ୟୋଧନ, ଶକୁନି, କର୍ଣ୍ଣ ଓ ଦୁଃଶାସନଙ୍କ ଭରସାରେ ଶାସନ କାର୍ଯ୍ୟ ଛାଡ଼ି ଆପଣ କିପରି ଭଲ ଆଶା କରି ପାରିବେ । ଆପଣଙ୍କ ଠାରେ ଓ ଏମାନଙ୍କଠାରେ ବୁଦ୍ଧିମାନର ଲକ୍ଷଣ ନାହିଁ । ଯାହାର ଆତ୍ମଜ୍ଞାନ ଅଛି, ଯେ ନିଜର ଶକ୍ତି ଅନୁସାରେ କାମ କରି ପାରେ, ଯାହାର ବିଷୟମାନଙ୍କରେ ବିରକ୍ତି ଅଛି, ସହନଶୀଳତା ଅଛି ଏବଂ ଯେ ଶ୍ରଦ୍ଧାର ସହିତ ଧର୍ମର ଅନୁଷ୍ଠାନ କରେ, ଯେ ସର୍ବଦା ପରୋପକାରୀ କାମ କରେ, ଲୋକବିରୋଧୀ କାମ କେବେ କରେ ନାହିଁ, ଭଗବାନ୍ ଓ ପରଲୋକ ଉପରେ ଯାହାର ଶ୍ରଦ୍ଧା ଅଛି; ଯେ କ୍ରୋଧ, ହର୍ଷ, ଅଭିମାନ, ଉଦ୍ଦଣ୍ଡତା ଆଦି ଦ୍ୱାରା ଦବି ଯାଏ ନାହିଁ; କାମ ହେବା ପୂର୍ବରୁ ଯାହାର ବିଚାରକୁ ଲୋକ ଜାଣି ପାରନ୍ତି ନାହିଁ, ବଡ଼ ବଡ଼ ବିଘ୍ନ ଯାହାର ନିଶ୍ଚୟକୁ ବଦଳାଇ ପାରେ ନାହିଁ; ଯେ ବ୍ୟବହାରରେ ସର୍ବଦା ଧର୍ମର ପାଳନ କରେ; ଯେ ବହୁତ ସମୟ ପର୍ଯ୍ୟନ୍ତ ଶୁଣେ ଏବଂ ଅଳ୍ପ ସମୟରେ ବୁଝିଯାଏ; ଯେ ଅସମ୍ଭବ ଇଚ୍ଛା କରେ ନାହିଁ, ନଷ୍ଟ ହୋଇଥିବା ଜିନିଷ ପାଇଁ ଶୋକ କରେ ନାହିଁ, ଆପତ୍ତିରେ ମୋହିତ ହୁଏ ନାହିଁ; ଯେ ନିର୍ଣ୍ଣୟ କରି ପରାକ୍ରମ ପ୍ରକଟ କରେ; ନିଜର ସମୟକୁ ବ୍ୟର୍ଥରେ କଟାଏ ନାହିଁ; ଯେ କଟୁଭାଷୀ ହିତୈଷୀକୁ ଅନାଦର କରେ ନାହିଁ; ସମ୍ମାନ ପାଇଲେ ଯେ ଫୁଲି ଯାଏ ନାହିଁ ଏବଂ ଅପମାନ ପାଇଲେ ଦୁଃଖୀ ହୁଏ ନାହିଁ, ସମସ୍ତଙ୍କ ରହସ୍ୟ ଜାଣିଯାଏ, ସେ ବୁଦ୍ଧିମାନ୍ କୁହାଯିବାର ଯୋଗ୍ୟ ଅଟେ ।

ଯାହାର ଅଧ୍ୟୟନ ବୁଦ୍ଧି ଅନୁସାରେ ଅଟେ ଏବଂ ଯାହାର ବୁଦ୍ଧି ବିଦ୍ୟା-ବିରୁଦ୍ଧ ନୁହେଁ; ଯେ ପ୍ରାଚୀନ ପୁରୁଷମାନଙ୍କ ଦ୍ୱାରା ନିଶ୍ଚିତ ମର୍ଯ୍ୟାଦାର

ଉଲ୍ଲଂଘନ କରେ ନାହିଁ; ସର୍ବଦା ସନାତନ ଧର୍ମ ଉପରେ ହୃଦୟର ସହିତ ଆରୂଢ଼ ରହେ, ସେ ବୁଦ୍ଧିମାନ୍ ଅଟେ । ବିଦୁର ପୁଣି କହିଲେ—'ରାଜା ! ଏହାତ ମୁଁ ପଣ୍ଡିତମାନଙ୍କ ଲକ୍ଷଣ କହିଲି, ଏବେ ଆପଣ ମୂର୍ଖମାନଙ୍କର ଲକ୍ଷଣ ଶୁଣନ୍ତୁ । ଯେ ଶାସ୍ତ୍ର ଓ ଲୋକଙ୍କ କଥା ଶୁଣେ ନାହିଁ, ଯେ ନିଜକୁ ନିଜେ ବଡ଼ ଗର୍ବ କରେ; ଯେ ଅସମର୍ଥ ହେଲେ ମଧ୍ୟ ମନୋରଥର ପୋଲ ବାନ୍ଧୁଥାଏ; ଯେ ପାପ ଦ୍ୱାରା ଧନ କମାଇବାକୁ ଚାହେଁ; ଯେ ମିତ୍ରତାରେ ଠକାମି କରେ; ଶତ୍ରୁମାନଙ୍କ ସହ ମିତ୍ରତା ଯୋଡେ; ନିଜର କରିବା କାମକୁ ଚାକର-ବାକରଙ୍କ ଦ୍ୱାରା କରାଏ; ସମସ୍ତଙ୍କୁ ସନ୍ଦେହ କରେ; କାମରେ ହେଳା କରେ ଏବଂ ଶୀଘ୍ର ହେବାକୁ ଥିବା କାମକୁ ବିଳମ୍ବରେ କରେ, ତାହାକୁ ମୂର୍ଖ କହିବା ଉଚିତ ।'

'ରାଜା ! ଯେ ପିତୃଲୋକଙ୍କର ଶ୍ରାଦ୍ଧ କରେ ନାହିଁ, ଦେବତାଙ୍କୁ ପୂଜା କରେ ନାହିଁ, ସଜ୍ଜନଙ୍କ ସହିତ ମିତ୍ରତା କରେ ନାହିଁ; ବିନା ଡାକରାରେ କାହାରି ପାଖକୁ ଚାଲିଯାଏ, ବିନା ପଚରାରେ ବହୁତ କିଛି କହି ପକାଏ; ବିଶ୍ୱାସଯୋଗ୍ୟ ଲୋକକୁ ଅବିଶ୍ୱାସ କରେ; ନିଜ ଦୋଷକୁ ଅନ୍ୟ ଉପରେ ଲଦି ଦିଏ; ଯେ ପରସ୍ତ୍ରୀମାନଙ୍କ ଉପରେ ଆଖି ପକାଏ ଏବଂ ଯେ କୃପଣର ସେବା କରେ, ସେ ମୂର୍ଖ ଅଟେ । ରାଜା ! ମୁଁ ଆପଣଙ୍କୁ ସତ କହୁଛି, ଏହା ପ୍ରାଚୀନ କାଳର ମର୍ଯ୍ୟାଦା ଅଟେ । ଯେ ସମ୍ପତ୍ତିଶାଳୀ ହୋଇ ଏକୁଟିଆ ଭଲ ଜିନିଷ ଖାଏ, ବଢ଼ିଆ ବଢ଼ିଆ ପୋଷାକ ପିନ୍ଧେ ଏବଂ ଅନ୍ୟକୁ ଦିଏ ନାହିଁ, ତାହାଠାରୁ ବଳି ନିଷ୍ଠୁର ଓ ନୀଚ ଆଉ କେହି ନାହିଁ । ଆପଣ ସ୍ଥିର ବୁଦ୍ଧିରେ କାର୍ଯ୍ୟ ଓ ଅକାର୍ଯ୍ୟ—ଏହି ଦୁହିଁଙ୍କୁ ନିର୍ଣ୍ଣୟ କରି ମିତ୍ର, ଶତ୍ରୁ, ଉଦାସୀନ—ଏହି ତିନିଙ୍କୁ ସାମ, ଦାନ, ଦଣ୍ଡ, ଭେଦ—ଏହି ଚାରିଙ୍କ ଦ୍ୱାରା ବଶ କରନ୍ତୁ । ପାଞ୍ଚ ଇନ୍ଦ୍ରିୟଙ୍କୁ ଜିଣି ସନ୍ଧି, ମାନ, ବିଗ୍ରହ ଆଦି ଛଅଟିକୁ ଜାଣି ବେଶ୍ୟା, ଜୁଆ, ମଦ୍ୟ, ଶିକାର, କଠୋର ବାକ୍ୟ, ଦଣ୍ଡର କଠୋରତା ଏବଂ ଅନ୍ୟାୟରେ ଧନୋପାର୍ଜନ—ଏହି ସାତଟି କଥାକୁ ଛାଡ଼ି ଦିଅନ୍ତୁ । ପୁଣି ଆପଣଙ୍କ ପାଇଁ ସୁଖ ହିଁ ସୁଖ । ବିଷ ଓ ଶସ୍ତ୍ରଦ୍ୱାରା କେବଳ ଜଣକର ହତ୍ୟା ହୁଏ, କିନ୍ତୁ କୁବିଚାରଦ୍ୱାରା ଅନେକଙ୍କର ନାଶ ହୋଇଯାଏ । କୌଣସି କାମ ପାଇଁ ଏକୁଟିଆ ଚିନ୍ତା କରିବା ଅନୁଚିତ,

ଏକୁଟିଆ ରାସ୍ତାରେ ଚ୍ଲିବା ଅନୁଚିତ ଏବଂ ଶୋଇବା ଲୋକଙ୍କୁ ଛାଡ଼ି ଏକୁଟିଆ ଉଠିବା ଅନୁଚିତ ।

କ୍ଷମା ମନୁଷ୍ୟର ପରମ ବଳ । କ୍ଷମା ଅଶାନ୍ତଙ୍କ ପାଇଁ ଗୁଣ ଏବଂ ସମର୍ଥଙ୍କ ପାଇଁ ଆଭୂଷଣ । ଯାହାଙ୍କ ହାତରେ କ୍ଷମାର ଖଡ଼୍ଗ ଅଛି, ଦୁର୍ଜନ ତାହାର କିଛି ବିଗାଡ଼ି ପାରେ ନାହିଁ । ଘାସ ପଡ଼ିଆରେ ଖାଲି ସ୍ଥାନରେ ନିଆଁ ପଡ଼ି ଆପଣାଛାଏଁ ଲିଭି ଯାଏ । ଧର୍ମ ହିଁ ପରମ କଲ୍ୟାଣ । କ୍ଷମା ହିଁ ପରମ ଶାନ୍ତି । ଜ୍ଞାନ ହିଁ ପରମ ତୃପ୍ତି ଏବଂ ଏକ ଅହିଂସା ହିଁ ସକଳ ସୁଖ ପ୍ରଦାନକାରୀ । ଯେ ରାଜା ହୋଇ ଯୁଦ୍ଧକୁ ଡରେ, ବ୍ରାହ୍ମଣ ହୋଇ ଘର ଛାଡ଼ିବାକୁ ଭୟଭୀତ ହୁଏ, ତାଙ୍କୁ ଭୂମି ଗିଳି ପକାଏ । ବେକାର ଗୃହସ୍ଥ ଏବଂ ରୋଜଗାରୀ ଭିକ ମାଗିବା ଲୋକ ଦୁହେଁ ଧର୍ମରୁ ଚ୍ୟୁତ ଅଟନ୍ତି । ସମର୍ଥର କ୍ଷମା ଏବଂ ଦରିଦ୍ରର ଦାନଶୀଳତା ଏ ଦୁହେଁ ମୋକ୍ଷର ଜନନୀ । ଯେ ଧନୀ ହୋଇ ଦାନ ନ କରେ ଏବଂ ଯେ ଗରିବ ହୋଇ ତପସ୍ୟା ନ କରେ, ସେମାନେ ଗଳାରେ ପଥର ବାନ୍ଧି ନଦୀରେ ବୁଡି ମରିବା ଉଚିତ । ଧନର ଦୁଇଟି ଅପବ୍ୟୟ ହୁଏ—ଏକେତ ଅପାତ୍ରରେ ଦାନ ଏବଂ ଅନ୍ୟଟି ସୁପାତ୍ରରେ ନ ଦେବା । ଯୋଗୀ-ସଂନ୍ୟାସୀ ଏବଂ ସମ୍ମୁଖ ଯୁଦ୍ଧରେ ମରି ଯାଉଥିବା କ୍ଷତ୍ରିୟ—ଏ ଦୁହେଁ ବ୍ରହ୍ମଲୋକକୁ ଯାଆନ୍ତି ।'

ଉପାୟ ତିନି ପ୍ରକାରର—ଉତ୍ତମ, ମଧ୍ୟମ ଓ ଅଧମ । ପୁରୁଷ ଓ କର୍ମ ମଧ୍ୟ ତିନି ପ୍ରକାରର ହୁଏ । ପରଧନକୁ ଅପହରଣ କରିବା, ପରସ୍ତ୍ରୀକୁ ଭୋଗ କରିବା ଏବଂ ସମ୍ବନ୍ଧୀୟମାନଙ୍କୁ ତ୍ୟାଗ କରିବା—ଏ ତିନିଟି ଲୋଭ, କାମ ଓ କ୍ରୋଧ ଦ୍ୱାରା ହୁଏ, ଅତଏବ ତିନିହେଁ ନିନ୍ଦନୀୟ । ବରଦାନ ମିଳିବା, ରାଜ୍ୟ ମିଳିବା ଓ ପୁତ୍ର ହେବା—ଏ ତିନୋଟି ଏକା ପରି, ପରନ୍ତୁ ଏହି ତିନିଙ୍କ ଠାରୁ ଶ୍ରେଷ୍ଠ ହେଉଛି ଶତ୍ରୁକୁ ବିପଦରୁ ରକ୍ଷା କରିବା । ଯେ ନିଜର ଭକ୍ତ, ନିଜର ସେବା କରେ ଏବଂ 'ମୁଁ ତୁମର ଭକ୍ତ ଅଟେ', ଏହି ପ୍ରକାର କୁହେ, ତାହାର ତ୍ୟାଗ କେବେ ହେଲେ କରିବା ଉଚିତ ନୁହେଁ । ସମ୍ପନ୍ନଙ୍କ ଘରେ ଚ୍ରି ପ୍ରକାର ଲୋକ ରହିବା ଉଚିତ—ନିଜର ସମ୍ପର୍କୀୟ ବୁଢ଼ା, ଦୁଃଖୀ, କୁଳୀନ ଦରିଦ୍ର ସଖା ଏବଂ ପୁତ୍ରହୀନ ଭଉଣୀ । ଚ୍ରିଟି କଥା ଶୀଘ୍ର ଫଳ ଦାନ କରେ—ଦେବତାଙ୍କ ଧ୍ୟାନ ମନୋରଥ ପୂର୍ଣ୍ଣ କରିଦିଏ । ବୁଦ୍ଧିମାନଙ୍କ ପ୍ରତାପରେ ଗୂଢ଼ କଥା ମଧ୍ୟ

ଜଣା ପଡ଼ିଯାଏ । ବିଦ୍ୱାନମାନଙ୍କର ବିନୟକୁ ଲୋକ ପୂଜା କରନ୍ତି ଏବଂ ପାପ ତ୍ୟାଗରେ ଅନ୍ତଃକରଣରେ ଶାନ୍ତି ଆସିଯାଏ। ଅଗ୍ନିହୋତ୍ର, ମୌନ, ଅଧ୍ୟୟନ ଓ ଯଜ୍ଞ ଯଦି ସମ୍ମାନ ପାଇଁ କରାଯାଏ ତେବେ ଏହାର ଫଳ ବିପରୀତ ହୁଏ।

ପିତା, ମାତା, ଅଗ୍ନି, ଆତ୍ମା ଏବଂ ଗୁରୁ—ଏହି ପାଞ୍ଚଙ୍କର ସେବା ପ୍ରତିଦିନ କରିବା ଉଚିତ। ଯେ ଦେବତା, ପିତର, ମନୁଷ୍ୟ, ଭିକ୍ଷୁକ ଓ ଅତିଥି—ଏହି ପାଞ୍ଚଙ୍କର ପ୍ରତିଦିନ ପୂଜା କରେ, ସେ ପୂଜନୀୟ ହୁଏ । ଯେଉଁ-ଯେଉଁଠାକୁ ତୁମେ ଯିବ, ସେହି ସେହିଠାକୁ ପାଞ୍ଚ ପ୍ରକାର ଲୋକ ତୁମ ସଙ୍ଗରେ ଯାଆନ୍ତି—ମିତ୍ର, ଶତ୍ରୁ, ମଧ୍ୟସ୍ଥ, ସେବ୍ୟ ଓ ସେବକ। ମନୁଷ୍ୟର ପାଞ୍ଚଟି ଇନ୍ଦ୍ରିୟ, ଯଦି ଗୋଟିକର କିଛି ଦୋଷ ହୁଏ ତେବେ ସେହି ରାସ୍ତାରେ ସବୁ ଜ୍ଞାନ ବହିଯାଏ। ଛଅଟି ଦୋଷକୁ ଅବଶ୍ୟ ଛାଡ଼ିଦେବା ଉଚିତ—ଅଧିକ ନିଦ୍ରା, ଅଧିକ ଜାଗରଣ, ଭୟ, କ୍ରୋଧ, ଆଳସ୍ୟ ଏବଂ ପରେ କରିଦେବି ଏହି ଭାବ। ଏହି ଛଅଟି ଗୁଣକୁ କେବେ ଛାଡିବା ଉଚିତ ନୁହେଁ—ସତ୍ୟ, ଦାନ, ସାବଧାନତା, ପ୍ରେମ, କ୍ଷମା ଓ ଧୈର୍ଯ୍ୟ। ଯାହାଙ୍କ ବଶରେ କାମ, କ୍ରୋଧ, ଶୋକ, ମୋହ, ମଦ ଓ ମାନ—ଏ ଛଅଟି ରହନ୍ତି, ସେ ଜିତେନ୍ଦ୍ରିୟ ଅଟନ୍ତି। ଗାଈ, ଗୃକିରୀ, ବିଲ, ସ୍ତ୍ରୀ, ବିଦ୍ୟା ଓ ଶୂଦ୍ରଙ୍କ ସହିତ ସଙ୍ଗତି—ଏ ଛଅଟି ଉପରେ ବରାବର ଦୃଷ୍ଟି ନ ରଖିଲେ ଏମାନେ ନଷ୍ଟ ହୋଇଯାଆନ୍ତି। ନିରୋଗତା, ଋଣହୀନତା, ସ୍ୱଦେଶରେ ରହିବା, ସତ୍‌ସଙ୍ଗ, ଅନୁକୂଳ ଜୀବିକା, ଭୟରହିତ ସ୍ଥାନରେ ରହିବା—ଏହି ଛଅଟିକୁ ସଂସାରରେ ସୁଖ ବୋଲି ମନେ କରାଯାଏ। ଯେ ଅନ୍ୟର ଉନ୍ନତି ଦେଖି ପାରେ ନାହିଁ, ସନ୍ତୁଷ୍ଟ ହୁଏ ନାହିଁ, କ୍ରୋଧ କରେ, କାହାରି ଉପରେ ବିଶ୍ୱାସ ରଖେ ନାହିଁ, ଅନ୍ୟର ପ୍ରାରବ୍ଧ ପ୍ରତି ଈର୍ଷା କରେ ତଥା ଅନ୍ୟକୁ ଘୃଣା କରେ, ସେ ସଦା ଦୁଃଖୀ ରହେ ।

ସ୍ତ୍ରୀ, ଜୁଆ, ଶିକାର, ମଦ୍ୟପାନ, କଠୋର ବାଣୀ, ଭୟଙ୍କର ଦଣ୍ଡ ଓ କାମ—ଏହି ସାତଟି ଦୋଷକୁ ସର୍ବଥା ତ୍ୟାଗ କରିବା ଉଚିତ । ବ୍ରାହ୍ମଣଙ୍କ ସହିତ ଦ୍ୱେଷ, ଲଢ଼ାଇ, ସେମାନଙ୍କ ଧନ ଲୁଟି ନେବା, ସେମାନଙ୍କୁ ମାରିବାକୁ ଇଚ୍ଛା କରିବା, ନିନ୍ଦା, ତାଙ୍କର ପ୍ରଶଂସାକୁ ଅସ୍ୱୀକାର କରିବା, ତାଙ୍କୁ ଭୁଲିଯିବା ଏବଂ ଯେତେବେଳେ ସେ ମାଗିବାକୁ ଆସନ୍ତି ସେତେବେଳେ

ତାଙ୍କଠାରେ ଅବଗୁଣ ବାହାର କରିବା—ଏହି ଆଠଟି ଭାବୀ ନାଶର ସୂଚକ । ଏହି ଶରୀର ଏକ ଘର । ଏଥିରେ ନଅଟି ଦ୍ୱାର, ତିନୋଟି ଖମ୍ବ, ପାଞ୍ଚଟି ସାକ୍ଷୀ ଅଛନ୍ତି ଏବଂ ଏହା ଭିତରେ ଜୀବ ନିବାସ କରେ । ଯେ ଏହାକୁ ଜାଣି ନିଏ, ସେ ତତ୍ତ୍ୱକୁ ଜାଣି ନିଏ। ଏହି ପ୍ରକାର ଲୋକଙ୍କର ଧର୍ମର ଜ୍ଞାନ ହୁଏ ନାହିଁ—ଯେ ମଦ୍ୟପାନ କରେ, ଧନସମ୍ପତ୍ତି ପାଇଁ ବ୍ୟାକୁଳ ରହେ, ଧାତୁମାନଙ୍କ ଦୋଷରୁ ପାଗଳ ପରି ରହେ, ଯେ ଶୀଘ୍ର କ୍ଳାନ୍ତ ହୋଇଯାଇଥାଏ, କ୍ରୋଧରେ ପାଗଳ ହୋଇଥାଏ, ଭୋକିଲା ଥାଏ, ମତୁଆଲା ହୋଇଥାଏ, ଲୋଭୀ, ଭୀରୁ, କାମୀ ଅଟେ, ଏମାନଙ୍କ ସହିତ ସଙ୍ଗ ହେବା ଉଚିତ ନୁହେଁ । ଯେ ଆପତ୍ତିରେ ବ୍ୟଥିତ ହୁଏ ନାହିଁ, ସାବଧାନତାର ସହିତ ଉଦ୍ୟୋଗ କରୁଥାଏ, ସମୟ ଆସିଲେ ଦୁଃଖ ମଧ୍ୟ ସହିଯାଏ, ତାହାର ଶତ୍ରୁ ନଷ୍ଟ ହୋଇଯାଆନ୍ତି । ଯେ ବିନା କାମରେ ବିଦେଶକୁ ଯାଏ ନାହିଁ, ପାପୀମାନଙ୍କ ସଙ୍ଗରେ ସଙ୍ଗ ହୁଏ ନାହିଁ, ପରସ୍ତ୍ରୀ ଉପରେ ଆଖି ପକାଏ ନାହିଁ, ସେ ସର୍ବଦା ସୁଖୀ ରହେ । ଯେ ନିଜ ସଙ୍ଗେ ସମାନ ଲୋକଙ୍କ ସହ ବିବାହ, ମୈତ୍ରୀ ବ୍ୟବହାର ଓ କଥାବାର୍ତ୍ତା କରେ, ଗୁଣୀମାନଙ୍କୁ ସମ୍ମାନ କରେ, ସେ ନୀତିରୁ ଚ୍ୟୁତ ହୁଏ ନାହିଁ । ଯେ ପରିମିତ ଭୋଜନ କରେ ଏବଂ ନିଜେ ଭୋଜନ କରିବା ପୂର୍ବରୁ ଆଶ୍ରିତମାନଙ୍କୁ ଭୋଜନ କରାଏ, ଅଳ୍ପ ଶୁଏ କିନ୍ତୁ ବହୁତ କାମ କରେ, ମାଗିଲେ ଶତ୍ରୁମାନଙ୍କୁ ମଧ୍ୟ ଦିଏ, ତାହାର ହାନି କେହି କରି ପାରନ୍ତି ନାହିଁ । ଯେ ନିଜର ଦୁଷ୍କର୍ମ ବିଷୟରେ କେହି ନ ଜାଣିଲେ ମଧ୍ୟ ଆପଣା ଛାଏଁ ଲଜ୍ଜିତ ହୁଏ, ତାହାର ଦୁଷ୍କର୍ମ ଗ୍ଳିଯାଏ, ତାକୁ ଶାନ୍ତି ମିଳେ ଏବଂ ସେ ଅତ୍ୟନ୍ତ ତେଜସ୍ୱୀ ହୋଇଯାଏ ।

ବିଦୁର ପୁଣି କହିଲେ—'ରାଜା ! ପାଣ୍ଡବମାନେ ଆପଣଙ୍କର ପିଲା । ଆପଣ ସେମାନଙ୍କର ପାଳନ-ପୋଷଣ କରିଛନ୍ତି । ଆପଣଙ୍କ କୋଳରେ ଖେଳି ସେମାନେ ବଡ଼ ହୋଇଛନ୍ତି । ଆପଣ ସେମାନଙ୍କର ପଢାପଢି କରାଇଛନ୍ତି ଏବଂ ସେମାନେ ମଧ୍ୟ ଆପଣଙ୍କର ଆଜ୍ଞା ପାଳନ କରନ୍ତି । ସେମାନଙ୍କର ହକ୍ ସ୍ୱତ୍ୱ ସେମାନଙ୍କୁ ଦେଇ ଦିଅନ୍ତୁ । ଆପଣଙ୍କ ହୃଦୟ ଶାନ୍ତ ହୋଇଯିବ । ତିନିଲୋକରେ ଆପଣଙ୍କର ପ୍ରଶଂସା ହେବ । ସମସ୍ତେ ଆପଣଙ୍କୁ ସମ୍ମାନ କରିବେ ।' ବିଦୁର ଧୃତରାଷ୍ଟ୍ରଙ୍କୁ ଧର୍ମ ଦୃଷ୍ଟିରେ, ଶାସନ

ଦୃଷ୍ଟିରେ ଏବଂ ବହୁ ପ୍ରକାରରେ ବୁଝାଇ କହିଲେ—'ଆପଣ ପାଣ୍ଡବଙ୍କ ସହିତ ନ୍ୟାୟ କରନ୍ତୁ । ନିଜର ପୁତ୍ରମାନଙ୍କର ପକ୍ଷପାତ କରିବା ଠିକ୍ ନୁହେଁ । ମୁଁ ଆପଣଙ୍କୁ ଗୋଟିଏ ପ୍ରାଚୀନ ଇତିହାସ ଶୁଣାଉଛି । ଆପଣ ଦେଖିବେ ନ୍ୟାୟ କରିବା ଦ୍ୱାରା ସବୁ ପ୍ରକାର କଲ୍ୟାଣ ହିଁ ହୁଏ ।

ପୁରାତନ କାଳରେ କେଶିନୀ ନାମରେ ଗୋଟିଏ କନ୍ୟା ଥିଲା । ଭକ୍ତରାଜ ପ୍ରହ୍ଲାଦଙ୍କ ପୁତ୍ର ବିରୋଚନ ତାଙ୍କୁ କହିଲା ଯେ ତୁମେ ମୋତେ ବରଣ କର ।' ସେ ପଚାରିଲା—ବିରୋଚନ! 'ବ୍ରାହ୍ମଣ ଶ୍ରେଷ୍ଠ ନା ଦୈତ୍ୟ ଶ୍ରେଷ୍ଠ' । ବିରୋଚନ କହିଲା—ଦୈତ୍ୟ ହିଁ ଶ୍ରେଷ୍ଠ । କେଶିନୀ କହିଲା—କାଲି ସକାଳେ ସୁଧନ୍ୱା ଆସିବେ, ତାଙ୍କୁ ଦେଖି ମୁଁ ନିର୍ଣ୍ଣୟ କରିବି ।' ପରଦିନ ସୁଧନ୍ୱା ଆସିଲେ, ବିରୋଚନ ତାଙ୍କୁ ବସିବା ପାଇଁ ନିଜ ଆସନ ଆଡକୁ ସଙ୍କେତରେ କହିଲା, ସେ କେବଳ ସ୍ପର୍ଶ କରିଦେଲେ । କଥା କଥାରେ ଦୁହିଁଙ୍କର ବିବାଦ ଲାଗିଗଲା ଯେ ବ୍ରାହ୍ମଣ ଓ ଦୈତ୍ୟଙ୍କ ମଧ୍ୟରେ କିଏ ଶ୍ରେଷ୍ଠ । ପ୍ରାଣର ବାଜି ରଖାଗଲା ଏବଂ ନିର୍ଣ୍ଣୟକାରୀ ବଛାଗଲା ବିରୋଚନ ପିତା ପ୍ରହ୍ଲାଦଙ୍କୁ । ଯେତେବେଳେ ଦୁହେଁ ପ୍ରହ୍ଲାଦଙ୍କ ନିକଟରେ ପହଞ୍ଚିଲେ ଏବଂ ପ୍ରହ୍ଲାଦ ସୁଧନ୍ୱାଙ୍କୁ ପଚାରିଲେ ଯେ ଅନୁଚିତ ନ୍ୟାୟ କରୁଥିବା ଲୋକଙ୍କୁ କି ଦଣ୍ଡ ମିଳେ, ସୁଧନ୍ୱା କହିଲେ—ସଉତୁଣୀ ସ୍ତ୍ରୀକୁ ଯେଉଁ କଷ୍ଟ ହୁଏ, ଜୁଆରେ ହାରିଲେ ଏବଂ ବୋଝ ବୋହିଥିବା ଲୋକଙ୍କୁ ଯେଉଁ ପୀଡ଼ା ହୁଏ, ଜେଲରୁ ବାହାରିବା ପାଇଁ ଛଟପଟ ହେଉଥିବା କଏଦୀକୁ ଏବଂ ଦ୍ୱାର ବାହାରେ ପଡି ରହିଥିବା ଭୋକିଲା ଲୋକକୁ ଯେଉଁ ଦୁଃଖ ମିଳେ, ସେହି ପ୍ରକାର ଦୁଃଖ ମିଥ୍ୟା ସାକ୍ଷୀ ଦେଉଥିବା ଲୋକକୁ ଏବଂ ଅନ୍ୟାୟପୂର୍ଣ୍ଣ ନ୍ୟାୟ କରୁଥିବା ଲୋକକୁ ମିଳେ । ସ୍ୱାର୍ଥବଶତଃ ମିଥ୍ୟା କହୁଥିବା ଲୋକ ସ୍ୱୟଂ ନରକକୁ ଯାଏ, ତାଙ୍କର ବଂଶର ଲୋକମାନେ ମଧ୍ୟ ନରକଗାମୀ ହୁଅନ୍ତି । ମିଥ୍ୟା କହୁଥିବା ଲୋକର ସର୍ବନାଶ ହୋଇଯାଏ ।'

ସୁଧନ୍ୱାଙ୍କର ଶାସ୍ତ୍ରସମ୍ମତ ବଚନ ଶୁଣି ପ୍ରହ୍ଲାଦ କହିଲେ—'ବିରୋଚନ ! ସୁଧନ୍ୱାର ପିତା ଅଙ୍ଗିରା ମୋଠାରୁ ଶ୍ରେଷ୍ଠ, ସୁଧନ୍ୱାଙ୍କ ମାଆ ତୁମ ମାଆଙ୍କଠାରୁ ଶ୍ରେଷ୍ଠ ଏବଂ ସୁଧନ୍ୱା ତୁମଠାରୁ ଶ୍ରେଷ୍ଠ । ଏହି ବିବାଦରେ ତୁମେ ସୁଧନ୍ୱାଙ୍କ ଠାରୁ ହାରିଗଲ । ତୁମର ପ୍ରାଣ ବର୍ତ୍ତମାନ ସୁଧନ୍ୱାଙ୍କ ହାତରେ' । ଏତିକି

କହି ପ୍ରହ୍ଲାଦ ସୁଧନ୍ୱାଙ୍କୁ କହିଲେ—'ବ୍ରହ୍ମନ୍ ! ମୁଁ ଚାହୁଁଛି ଯେ ଆପଣ ମୋର ପୁତ୍ରକୁ ପ୍ରାଣଦାନ କରନ୍ତୁ ।' ସୁଧନ୍ୱା କହିଲେ—'ଦୈତ୍ୟରାଜ ! ତୁମେ ଧର୍ମର ପକ୍ଷ ନେଇ ସତ୍ୟ କଥା କହିଛ । ପୁତ୍ରର ପକ୍ଷ ନେଇ ମିଥ୍ୟା କଥା କହି ନାହଁ, ଏଥିରେ ପ୍ରସନ୍ନ ହୋଇ ମୁଁ ତୁମକୁ ତୁମର ପୁତ୍ରକୁ ଦାନ କରୁଛି । ମୁଁ ବିରୋଚନକୁ ଛାଡି ଦେଲି । ବର୍ତ୍ତମାନ ସେ କେଶିନୀ ସହିତ ବିବାହ କରି ପାରିବ ।'

ବିଦୁର କହିଲେ—'ମହାରାଜ ଆପଣ ମଧ୍ୟ ପ୍ରହ୍ଲାଦଙ୍କ ପରି ଉଚିତ ନ୍ୟାୟ କରନ୍ତୁ ଏବଂ ଭୂମି ଲୋଭରେ ମିଥ୍ୟା କହନ୍ତୁ ନାହିଁ । ଯଦି ଆପଣ ପକ୍ଷପାତ କରିବେ ତେବେ ଆପଣଙ୍କର ସର୍ବନାଶ ହୋଇଯିବ ।' ବିଦୁର ଆହୁରି ବହୁତ ପ୍ରକାର ବୁଝାଇଲେ । ଧୃତରାଷ୍ଟ୍ର ବାରମ୍ବାର ପଚାରୁଥାନ୍ତି ଏବଂ ବିଦୁର ତାଙ୍କୁ ଉତ୍ତର ଦେଉଥାନ୍ତି । ଧୃତରାଷ୍ଟ୍ର ଶେଷରେ କହିଲେ— 'ବିଦୁର ! ତୁମେ ମୋତେ ସର୍ବଦା ଏହି ଉପଦେଶ ଦେଇ ଆସୁଛ ଏବଂ ଠିକ୍ ଭାବରେ ହିଁ ଦେଉଛ । ମୁଁ ମଧ୍ୟ ଏହା କହୁଛି ଏବଂ କରିବା ପାଇଁ ଚାହୁଁଛି । ପାଣ୍ଡବମାନଙ୍କ ବିଷୟରେ ଧର୍ମସଙ୍ଗତ ନିର୍ଣ୍ଣୟ ମଧ୍ୟ କରୁଛି, ପରନ୍ତୁ ଦୁର୍ଯ୍ୟୋଧନ ସାମନାକୁ ଆସିବା ମାତ୍ରେ ସବୁ କିଛି ବିଗିଡି ଯାଉଛି । ଏବେ ଯାହା ହେବାର ଅଛି ତାହାହିଁ ହେବ । ମୋତେ ନିଜର ଉଦ୍ୟୋଗ ସମ୍ବନ୍ଧରେ କୌଣସି ଆଶା ନାହିଁ । ଯଦି ଆଉ କିଛି ଉପଦେଶ ଦେବାକୁ ବାକି ଅଛି ତେବେ ମୋତେ ଶୁଣାଅ । ତୁମର କଥା ଖୁବ ବିଚିତ୍ର, ଏଥିରେ ମୋତେ ତୃପ୍ତି ହେଉନାହିଁ ।

ବିଦୁର କହିଲେ—'ରାଜା ! ଏହାପରେ ବ୍ରହ୍ମବିଦ୍ୟା ବିଷୟ । ମୁଁ ଶୂଦ୍ର-ଯୋନିରେ ଜନ୍ମ ହୋଇଛି, ଏଣୁ ସେହି କଥା କହିବା ଉଚିତ ନୁହେଁ । ମହର୍ଷି ସନତ୍‌ସୁଜାତ ହିଁ ସେହି ସିଦ୍ଧାନ୍ତକୁ କହି ପାରିବେ, ଏଣୁ ଆପଣ ତାଙ୍କରି ମୁହଁରୁ ଶୁଣିବେ ।' ଧୃତରାଷ୍ଟ୍ର କହିଲେ—କ'ଣ ମୋର ଏଡ଼େ ଭାଗ୍ୟ ହେବ ଯେ ମୁଁ ଏଇ ଶରୀରରେ ତାଙ୍କର ଦର୍ଶନ ପାଇ ପାରିବି ? ବିଦୁର ସନତ୍‌ସୁଜାତଙ୍କୁ ଧ୍ୟାନ କଲେ ଏବଂ ସେ ସେହି ସମୟରେ ସେଠାରେ ଉପସ୍ଥିତ ହୋଇଗଲେ । ବିଦୁର ତାଙ୍କୁ ଉଚ୍ଚ ଆସନରେ ବସାଇ ତାଙ୍କର ପୂଜା କଲେ ଏବଂ ପ୍ରାର୍ଥନା କଲେ ଯେ ଧୃତରାଷ୍ଟ୍ରଙ୍କ ମନରେ ଏପରି ଏକ ଶଙ୍କା ଅଛି, ଯାହାର ସମାଧାନ କରିବା ଅଧିକାର ମୋର

ନାହିଁ । ସେ ସମସ୍ତ ଦୁଃଖରୁ, ସମସ୍ତ ଦ୍ୱନ୍ଦ୍ୱରୁ ସର୍ବଦା ମୁକ୍ତି ପାଇଯିବା ଭଳି ଉପଦେଶ କରନ୍ତୁ । ଧୃତରାଷ୍ଟ୍ର ମଧ୍ୟ ସନତ୍ସୁଜାତଙ୍କ ନିକଟରେ ବିଦୁରଙ୍କ କଥାର ସମର୍ଥନ କରି ମୃତ୍ୟୁର ରହସ୍ୟ ବିଷୟ ପଚାରିଲେ । ସନତ୍ସୁଜାତ ବିଦୁରଙ୍କ ପ୍ରାର୍ଥନାରେ ଧୃତରାଷ୍ଟ୍ରଙ୍କୁ ସମସ୍ତ ବ୍ରହ୍ମଜ୍ଞାନର ଉପଦେଶ କଲେ ଏବଂ ମୃତ୍ୟୁ ରହସ୍ୟ ବତାଇଦେଲେ । ଉଦ୍ୟୋଗପର୍ବର ସେହି ଅଂଶ ଅତି ମହତ୍ତ୍ୱପୂର୍ଣ୍ଣ । ଅଧ୍ୟାତ୍ମଜିଜ୍ଞାସୁମାନଙ୍କ ପାଇଁ ତାର ସ୍ୱାଧ୍ୟାୟ ଅତ୍ୟନ୍ତ ଉପଯୋଗୀ । କଥାବାର୍ତ୍ତା କରୁ କରୁ ରାତି ପାହିଗଲା ଏବଂ ସକାଳ ହେବାରୁ ସମସ୍ତେ ନିତ୍ୟକୃତ୍ୟ ଶେଷ କରି ସଞ୍ଜୟଙ୍କ ଠାରୁ ଯୁଧିଷ୍ଠିରଙ୍କ ସନ୍ଦେଶ ଶୁଣିବା ପାଇଁ ସଭାକୁ ଗଲେ ।

## (୪)

ସାଧାରଣ ଧର୍ମ ଧର୍ମ ଅଟେ, କିନ୍ତୁ ଏକ ପରମ ଧର୍ମ ମଧ୍ୟ ଅଛି । ସେଇ ପରମ ଧର୍ମ କ'ଣ ? ସନ୍ଥମାନେ ଏକ ସ୍ୱରରେ ଏହା କହିଛନ୍ତି ଯେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଆରାଧନା, ତାଙ୍କ ପ୍ରତି ପ୍ରେମ, ତାଙ୍କ ସନ୍ନିଧିର ଅନୁଭବ, ତାଙ୍କରି କୃପାପାତ୍ରତା, ତାଙ୍କ ସଙ୍ଗରେ ଏକ ହୋଇଯିବା, ଏହା ପରମ ଧର୍ମ ଅଟେ; ତଥା ଧର୍ମର ଏହାହିଁ ବାସ୍ତବ ସ୍ୱରୂପ ଅଟେ । ଧର୍ମର ଯେତିକି ଭେଦ-ବିଭେଦ ଓ ରୂପାନ୍ତର ବର୍ଣ୍ଣନା ଆସିଛି, କରାଯାଇଛି ଏବଂ ଭବିଷ୍ୟତରେ କରାଯିବାର ସମ୍ଭାବନା ଅଛି; ସେହି ସବୁର ପରିସମାପ୍ତି ଅଥବା ପୂର୍ଣ୍ଣତା ଏହି ପରମ ଧର୍ମରେ ଅଛି । ଯଦି ଶ୍ରୀକୃଷ୍ଣଙ୍କ ସଙ୍ଗରେ ସମ୍ବନ୍ଧ ହୋଇ ନ ପାରିବ ତେବେ ସମସ୍ତ ଧର୍ମ ଅଧାରେ ରହିଯିବ ତାହା ସ୍ଥାୟୀ ହେବ ନାହିଁ ଏବଂ ଯଦି ସମସ୍ତ ଧର୍ମର ଅନୁଷ୍ଠାନ ହେବା ପରେ ମଧ୍ୟ ତାହାର ଫଳସ୍ୱରୂପ ପରମ ଧର୍ମ ମିଳି ପାରେ ନାହିଁ ତେବେ ଏହା କହିବାକୁ ହେବ ଯେ ଅନୁଷ୍ଠାନ ଠିକ୍ ଠିକ୍ ହୋଇନାହିଁ । ବିଦୁରଙ୍କ ଜୀବନରେ ଯେଉଁଠି ସାଧାରଣ ଓ ବିଶେଷ ଧର୍ମର ପୂର୍ଣ୍ଣତା ଥିଲା, ସେଠାରେ ଏହି ପରମ ଧର୍ମର ମଧ୍ୟ ପୂର୍ଣ୍ଣତା ଥିଲା । ସେ ଶ୍ରୀକୃଷ୍ଣଙ୍କର କୃପାପାତ୍ର ଥିଲେ, ପରମ ଭକ୍ତ ଥିଲେ ଏବଂ ପରମ ପ୍ରେମୀ ଥିଲେ ।

ବିଦୁର ଧୃତରାଷ୍ଟ୍ରଙ୍କୁ ଓ ଦୁର୍ଯ୍ୟୋଧନଙ୍କୁ ବହୁତ ବୁଝାଇଲେ, ପରନ୍ତୁ

ତାଙ୍କର କୌଣସି କଥା ସେଇ ଲୋକମାନେ ଶୁଣିଲେ ନାହିଁ । ଶେଷରେ ପାଣ୍ଡବମାନଙ୍କର ସନ୍ଧି-ପ୍ରସ୍ତାବ ନେଇ ଶ୍ରୀକୃଷ୍ଣ ଆସିବା କଥା ଶୁଣାଗଲା । ଧୃତରାଷ୍ଟ୍ର ବିଦୁରଙ୍କୁ କହିଲେ—'ଶ୍ରୀକୃଷ୍ଣଙ୍କ ଆସିବାର ଅଛି, ତାଙ୍କରି ସ୍ୱାଗତ ପାଇଁ ମୁଁ ବହୁତ ରଥ, ଘୋଡ଼ା, ହାତୀ, ରତ୍ନ, ସୁନାର ରଥ ଆଦି ଦେବି । ସମସ୍ତେ ତାଙ୍କର ସ୍ୱାଗତ କରିବେ ଏବଂ ନଗରର ସମସ୍ତ ପ୍ରଜା ତାଙ୍କୁ ସମ୍ମାନ କରିବେ । ତାଙ୍କ ରହିବା ପାଇଁ ସବୁଠାରୁ ସୁନ୍ଦର ସ୍ଥାନ ଦିଆଯିବ ଏବଂ ମୋ ପାଖରେ ଯାହାକିଛି ସର୍ବୋତ୍ତମ ସାମଗ୍ରୀ ଅଛି ତାହା ତାଙ୍କୁ ଭେଟି ଦିଆଯିବ ।' ବିଦୁର କହିଲେ—'ମହାରାଜ ! ଆପଣ ବଡ଼ ବୁଦ୍ଧିମାନ । ଆପଣ ସବୁକଥା ଜାଣନ୍ତି । ଆପଣଙ୍କୁ ଆଉ କ'ଣ କହିବି ? ଏବେ ଆପଣ ଚ୍ଛଳାଖ୍ଚ ଛାଡି ଦିଅନ୍ତୁ । ସରଳ ହୋଇ ଯାଆନ୍ତୁ । ଆପଣ ଶ୍ରୀକୃଷ୍ଣଙ୍କୁ ସମ୍ମାନ କରିବାକୁ ଚାହୁଁଛନ୍ତି, ଏହା ବଡ଼ ସୁନ୍ଦର କଥା । ଏହି ସାମଗ୍ରୀ କଥା କ'ଣ କହୁଛନ୍ତି, ଶ୍ରୀକୃଷ୍ଣ ସମଗ୍ର ପୃଥିବୀର ସ୍ୱାମୀ ଏବଂ ବାସ୍ତବରେ ସେ ଏହାର ପାତ୍ର । ପରନ୍ତୁ ମୁଁ ଶପଥ ପୂର୍ବକ କହୁଛି ଯେ ଆପଣ ଧର୍ମ ଦୃଷ୍ଟିରୁ ଅଥବା ପ୍ରେମଦୃଷ୍ଟିରୁ ଏ ସବୁ ତାଙ୍କୁ ଦେବାକୁ ଚାହାଁନ୍ତି ନାହିଁ । ଆପଣ ତାଙ୍କ ଉପରେ ଆପଣଙ୍କର ମାୟାଜାଲ ବିସ୍ତାର କରିବାକୁ ଚାହୁଁଛନ୍ତି ଏବଂ ତାଙ୍କୁ ଏହି ବାହ୍ୟ ସାମଗ୍ରୀ ଦ୍ୱାରା ଠକିବାକୁ ଚାହୁଁଛନ୍ତି । ଆପଣ ପାଣ୍ଡବମାନଙ୍କୁ ପାଞ୍ଚୋଟି ଗ୍ରାମ ଦେଇପାରୁ ନାହାଁନ୍ତି, ଅଥଚ ଧନ ବଳରେ ଶ୍ରୀକୃଷ୍ଣଙ୍କୁ ବଶ କରିବାକୁ ଚାହୁଁଛନ୍ତି । ଆପଣ ଧନ, କପଟ ଅଥବା ମାୟା କରି ଶ୍ରୀକୃଷ୍ଣଙ୍କୁ ପାଣ୍ଡବମାନଙ୍କ ଠାରୁ ଅଲଗା କରି ପାରିବେ ନାହିଁ । ମୁଁ ଶ୍ରୀକୃଷ୍ଣଙ୍କ ମହିମା ଜାଣିଛି । ମୁଁ ତାଙ୍କରି ପ୍ରେମ ଜାଣିଛି ଏବଂ ସେ ଧନଞ୍ଜୟ ଅର୍ଜୁନଙ୍କୁ କେତେ ପ୍ରେମ କରନ୍ତି, ଏହା ମଧ୍ୟ ମୁଁ ଜାଣିଛି । ସେ ଜଳପାତ୍ର, ପାଦପ୍ରକ୍ଷାଳନ ଏବଂ କୁଶଳ ପ୍ରଶ୍ନ ଅତିରିକ୍ତ ଆପଣଙ୍କର କୌଣସି କଥା ସ୍ୱୀକାର କରିବେ ନାହିଁ । ଯଦି ଆପଣ ଶ୍ରୀକୃଷ୍ଣଙ୍କୁ ପ୍ରସନ୍ନ କରିବାକୁ ଚାହାଁନ୍ତି, ତେବେ ଯାହା ପାଇଁ ସେ ଆସିଛନ୍ତି ସେହି କାମ କରନ୍ତୁ । ସେ କୌରବ ଓ ପାଣ୍ଡବଙ୍କର କଲ୍ୟାଣ କରିବାକୁ ଚାହାଁନ୍ତି । ଆପଣ ତାଙ୍କର ସେହି ଆତିଥ୍ୟ କରନ୍ତୁ । ଆପଣ ପିତା, ପାଣ୍ଡବ ଓ କୌରବ ଆପଣଙ୍କର ପୁତ୍ର । ଶ୍ରୀକୃଷ୍ଣଙ୍କ ପ୍ରସନ୍ନତା ଓ ପ୍ରେମ ପାଇଁ ପାଣ୍ଡବମାନଙ୍କ ସହିତ ନିଜ ପୁତ୍ରପରି ବ୍ୟବହାର କରନ୍ତୁ ।

ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣଙ୍କ ସ୍ୱାଗତକୁ ବିରୋଧ କଲା ଏବଂ ଧୃତରାଷ୍ଟ୍ର ଯେପରି ସ୍ୱାଗତ ଚାହିଁଥିଲେ ତାହା ହୋଇପାରିଲା ନାହିଁ ।

ଶ୍ରୀକୃଷ୍ଣ ଆସିଲେ, ଦୁର୍ଯ୍ୟୋଧନ ଛଡ଼ା ସମସ୍ତେ ତାଙ୍କର ସ୍ୱାଗତ କଲେ । ସମସ୍ତଙ୍କ ସହିତ ମିଶିବା ପରେ ଶ୍ରୀକୃଷ୍ଣ ବିଦୁରଙ୍କ ଘରକୁ ଗଲେ । ବିଦୁର ମାଙ୍ଗଳିକ ସାମଗ୍ରୀମାନଙ୍କ ସହ ଶ୍ରୀକୃଷ୍ଣଙ୍କ ସ୍ୱାଗତ କଲେ ଏବଂ ଯାହାକିଛି ସାମଗ୍ରୀ ତାଙ୍କ ଘରେ ଥିଲା, ତଦ୍ଦ୍ୱାରା ଶ୍ରୀକୃଷ୍ଣଙ୍କ ପୂଜା କଲେ । ସେହି ସମୟରେ ବିଦୁରଙ୍କର କେତେ ଯେ ଆନନ୍ଦ ହୋଇଥିଲା ତାହା ଭାଷାରେ ବର୍ଣ୍ଣନା କରିହେବ ନାହିଁ । ସେ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ କହିଲେ— 'କମଳନୟନ ! ତୁମର ଦର୍ଶନରେ ମୋତେ ଯେଉଁ ଆନନ୍ଦ ମିଳିଛି, ତାହାର ବର୍ଣ୍ଣନା ମୁଁ ତୁମ ପାଖରେ କ'ଣ କରିବି ? ତୁମେ ତ ସମସ୍ତ ପ୍ରାଣୀଙ୍କର ଅନ୍ତର୍ଯ୍ୟାମୀ ।* ତୁମକୁ କିଛି ଅଛପା ନାହିଁ, ତୁମେ ଧର୍ମ, ଅର୍ଥ, କାମ ଓ ମୋକ୍ଷର ଆଶ୍ରୟ ଅଟ, ସନ୍ଥମାନେ ତୁମରି ଉପାସନା କରନ୍ତି ।' ଶ୍ରୀକୃଷ୍ଣ ବିସ୍ତାରିତ ଭାବେ ପାଣ୍ଡବମାନଙ୍କର କୁଶଳ-ମଙ୍ଗଳ ବିଦୁରଙ୍କୁ ଶୁଣାଇଲେ ଏବଂ ପରେ କୁନ୍ତୀଙ୍କ ନିକଟକୁ ଗଲେ । କୁନ୍ତୀଙ୍କୁ ବୁଝାଇବା ପରେ ସେ ଦୁର୍ଯ୍ୟୋଧନ ମହଲକୁ ଗଲେ । ସେଠାରେ ସାମାନ୍ୟ ସ୍ୱାଗତ ସତ୍କାର ପରେ ଦୁର୍ଯ୍ୟୋଧନ ଭୋଜନ ପାଇଁ ଶ୍ରୀକୃଷ୍ଣଙ୍କୁ ନିମନ୍ତ୍ରଣ କଲା ।

ଶ୍ରୀକୃଷ୍ଣ ସ୍ପଷ୍ଟ ଶବ୍ଦରେ କହିଦେଲେ—'ଭାଇ ! କେହି ପ୍ରେମରେ ଖୁଆଇଲେ ତ ସେଠାରେ ମୁଁ ଖାଇବି ଏବଂ ଯଦି କିଛି ଭୋଜନ ନ ମିଳେ, ବିପଦ ସମୟ ହେଲେ କାହାରି ଘରେ ଏଠାରେ ଖାଇଦେବି । ତୁମେ ପ୍ରେମରେ ଖୋଇବାକୁ ଇଚ୍ଛା କରୁନାହଁ ଏବଂ ମୁଁ ମଧ୍ୟ ବିପଦ ଅବସ୍ଥାରେ ନାହିଁ, ପୁଣି ତୁମର ଏଠାରେ ମୁଁ କି ପ୍ରକାର ଭୋଜନ କରି ପାରିବି ? ପାଣ୍ଡବମାନେ ଧାର୍ମିକ ଅଟନ୍ତି । ଧାର୍ମିକ ପୁରୁଷ ମୋର ଆତ୍ମା ଅଟନ୍ତି, ଯେ ତାଙ୍କଠାରେ ଦ୍ୱେଷ କରେ, ସେ ମୋଠାରେ ମଧ୍ୟ ଦ୍ୱେଷ କରେ । ଦୁର୍ଯ୍ୟୋଧନକୁ ଶ୍ରୀକୃଷ୍ଣ ସ୍ପଷ୍ଟ କହିଦେଲେ ଯେ ତୁମ୍ଭେମାନେ ଦୁଷ୍ଟ, ତୁମର ଅନ୍ନ ମୁଁ ଖାଇପାରିବି ନାହିଁ । ମୋର ବିଶ୍ୱରରେ ଏଠାରେ

---

* ଯା ମେ ପ୍ରୀତିଃ ପୁଷ୍କରାକ୍ଷ ତ୍ୱଦ୍ଦର୍ଶନସମୁଦ୍ଭବା ।
ସା କିମାଖ୍ୟାୟତେ ତୁଭ୍ୟମନ୍ତରାତ୍ମାସି ଦେହିନାମ୍ ॥

କେବଳ ବିଦୁରଙ୍କ ଅନ୍ନ ପବିତ୍ର । ମୁଁ ସେଠାରେ ଭୋଜନ କରିବି ।'*
ଏତିକି କହି ଶ୍ରୀକୃଷ୍ଣ ବିଦୁରଙ୍କ ଘରକୁ ଚାଲିଗଲେ ।

ଭକ୍ତମାଳ ଆଦି ଗ୍ରନ୍ଥରେ ଏପରି କଥା ଆସେ ଯେ ଯେତେବେଳେ ଶ୍ରୀକୃଷ୍ଣ ବିଦୁରଙ୍କ ଘରେ ପହଞ୍ଚିଲେ, ସେ ସମୟରେ ବିଦୁର ଘରେ ନ ଥିଲେ । ବିଦୁରଙ୍କ ପତ୍ନୀ ବସ୍ତ୍ର ଖୋଲି ସ୍ନାନ କରୁଥିଲେ । ଶ୍ରୀକୃଷ୍ଣଙ୍କ ଡାକ ତାଙ୍କରି କାନରେ ପଡ଼ିଲା ପରେ ସେ ପ୍ରେମ ବିହ୍ୱଳ ହୋଇଗଲେ ଏବଂ ଯେଉଁ ଅବସ୍ଥାରେ ଥିଲେ ସେହି ଅବସ୍ଥାରେ ଦଉଡ଼ି ଆସିଲେ । ସେ ଶ୍ରୀକୃଷ୍ଣଙ୍କୁ ଗୋଟିଏ ପିଢ଼ା ଉପରେ ବସାଇ କଦଳୀ ଚୋପା ଛଡ଼ାଇ ତାଙ୍କୁ ଚୋପାତକ ଖୁଆଇବାକୁ ଲାଗିଲେ । ପ୍ରେମରେ ଏପରି ଭୁଲ ହୋଇଗଲା । ତାଙ୍କୁ ଏହାର ଧ୍ୟାନ ନ ଥିଲା ଯେ ମୁଁ ଶ୍ରୀକୃଷ୍ଣଙ୍କୁ କଦଳୀ ଚୋପା ଖୁଆଉ ଅଛି । ଶ୍ରୀକୃଷ୍ଣ ମଧ୍ୟ ତାଙ୍କର ଅନାବିଳ ପ୍ରେମ ଦେଖି ବିହ୍ୱଳ ହୋଇ ରହିଥିଲେ । ତାଙ୍କୁ କଦଳୀ ଚୋପାରୁ ବଡ଼ ଆନନ୍ଦ ମିଳୁଥିଲା । ବିଦୁର ବାହାରୁ ଆସି ଏହା ଦେଖିପକାଇଲେ ଏବଂ ନିଜର ଧର୍ମପତ୍ନୀଙ୍କୁ ଆଖି ଦେଖାଇ ଭଗବାନଙ୍କୁ କଦଳୀ ଖୁଆଇବା ଆରମ୍ଭ କଲେ ଏବଂ ପୁଣି ଉତ୍ତମ ଭୋଜନ ପ୍ରସ୍ତୁତ କରି ତାଙ୍କୁ ପରଷିଲେ । ସେତିକିବେଳେ ଭଗବାନ୍ ସ୍ପଷ୍ଟ କହିଦେଲେ ଯେ 'କଦଳୀ ଚୋପାରେ ଯେଉଁ ସ୍ୱାଦ ଥିଲା, ଯେତେ ରସ ଥିଲା, ତାହା ଏଥିରେ ନାହିଁ ।' ଭଗବାନ୍ ତ ପ୍ରେମର ଭିକାରି, ତାଙ୍କ ଆଗରେ ବସ୍ତୁର କୌଣସି ମହତ୍ତ୍ୱ ନାହିଁ । ଏହି ପ୍ରକାର କୌଣସି କୌଣସି ସ୍ଥାନରେ ବିଦୁରଙ୍କର ଶାଗ, ବିଦୁରଙ୍କ ଖୁଦ କଥା ମଧ୍ୟ ଆସେ ।

ମହାଭାରତରେ ଅଛି ଯେ ଶ୍ରୀକୃଷ୍ଣ ବିଦୁରଙ୍କ ଘରକୁ ଯିବାବେଳେ ଭୀଷ୍ମ ପିତାମହ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଆଦି ତାଙ୍କ ପଛରେ ଆସିଲେ ଏବଂ ତାଙ୍କୁ ତାଙ୍କ ଘରକୁ ଯିବା ପାଇଁ ପ୍ରାର୍ଥନା କଲେ । ପରନ୍ତୁ ଭଗବାନ୍ ସେମାନଙ୍କୁ ମୋର ସମ୍ମାନ ହୋଇଗଲା କହି ଫେରାଇ ଦେଲେ । ସେହି ଲୋକମାନେ ଚାଲିଯିବା ପରେ ବିଦୁର ପ୍ରେମ ଓ ଉତ୍ସାହର ସହିତ ବିବିଧ ସାମଗ୍ରୀମାନଙ୍କରେ ଶ୍ରୀକୃଷ୍ଣଙ୍କ ସତ୍କାର କଲେ । ସେ ପବିତ୍ର ଓ ଗୁଣଯୁକ୍ତ ଅନେକ ପ୍ରକାର ଖାଇବା-ପିଇବାର ସାମଗ୍ରୀ ଶ୍ରୀକୃଷ୍ଣଙ୍କୁ ନିବେଦନ କଲେ

* ସର୍ବମେତଦଭୋକ୍ତବ୍ୟମନ୍ନଂ ଦୁଷ୍ଟାଭିସଂହିତମ୍ ।
କ୍ଷତ୍ତୁରେକସ୍ୟ ଭୋକ୍ତବ୍ୟମିତି ମେ ଧୀୟତେ ମତିଃ ॥

ଭଗବାନ ଶ୍ରୀକୃଷ୍ଣ ସେହି ସାମଗ୍ରୀମାନଙ୍କ ଦ୍ୱାରା ପ୍ରଥମେ ବେଦବତ୍ତା ବ୍ରାହ୍ମଣମାନଙ୍କୁ ଭୋଜନ କରାଇଲେ ଏବଂ ସେମାନଙ୍କୁ ଦକ୍ଷିଣା ଦେଲେ। ସେମାନଙ୍କ ଭୋଜନ ପରେ ଦେବତାଙ୍କ ସହିତ ଇନ୍ଦ୍ରଙ୍କ ପରି ନିଜର ଅନୁଗତମାନଙ୍କ ସହିତ ଶ୍ରୀକୃଷ୍ଣ ବିଦୁରଙ୍କର ପବିତ୍ର ଓ ଗୁଣଯୁକ୍ତ ଭୋଜନ ସାମଗ୍ରୀ ଗ୍ରହଣ କଲେ ।

ରାତିରେ ଶ୍ରୀକୃଷ୍ଣ ବିଦୁରଙ୍କ ଘରେ ରହିଲେ । ବିଦୁର ଶ୍ରୀକୃଷ୍ଣଙ୍କୁ କହିଲେ—'ଭଗବନ୍ ! ଦୁର୍ଯ୍ୟୋଧନ ବଡ଼ ଅଭିମାନୀ ଓ ଅଧର୍ମୀ । ତାହାର ଲୋଭ ଓ ମିଥ୍ୟା ବହୁତ ବଢ଼ି ଯାଇଛି । ସେ ଭୀଷ୍ମ, ଦ୍ରୋଣ, କୃପ, କର୍ଣ୍ଣ, ଅଶ୍ୱତ୍ଥାମା, ଜୟଦ୍ରଥଙ୍କ ସେବାରେ ଲାଗିଛି । ସେମାନଙ୍କୁ ବହୁ ଧନ ଦେଉଛି ଏବଂ ବିଗ୍ରହ କରୁଛି ଯେ ମୁଁ ଏମାନଙ୍କ ଭରସାରେ ପାଣ୍ଡବମାନଙ୍କୁ ଜିଣିବି । ତାହାର ମନରେ ଏହି କଥା ବସି ଯାଇଛି ଯେ କର୍ଣ୍ଣ ଏକୁଟିଆ ସାରା ସଂସାରକୁ ଜୟ କରି ପାରିବ । ତାହାର ମନରେ ସନ୍ଧି କରିବାର ଇଚ୍ଛା ଟିକିଏ ହେଲେ ନାହିଁ । ସେ ପାଣ୍ଡବମାନଙ୍କୁ କିଛି ନ ଦେବା ପାଇଁ ନିର୍ଣ୍ଣୟ କରି ସାରିଛି । ମୋତେ ଏହି କଥାର ବଡ଼ ଚିନ୍ତା ଯେ ଆପଣ ଆସିବା ବ୍ୟର୍ଥ ହେଲା । ତାଙ୍କୁ କହିବା ନ କହିବା ସଙ୍ଗେ ସମାନ । କାଲ ଆଗରେ ଗୀତ ଗାଇବା ପରି ତାକୁ ଉପଦେଶ ଦେବା ବ୍ୟର୍ଥ । ସେମାନେ ସବୁ ପାପୀ ଏକାଠି ଥିବେ, ସେମାନଙ୍କ ପାଖକୁ ଆପଣଙ୍କର ଯିବା ମୋତେ ଭଲ ଲାଗୁ ନାହିଁ । ସେମାନେ ବୃଦ୍ଧଙ୍କ ଉପାସନା କରି ନାହାନ୍ତି । ବଳ ଓ ଲକ୍ଷ୍ମୀଙ୍କ ଗର୍ବରେ ପାଗଳ ହୋଇ ଯାଇଛନ୍ତି । ମୋ ବିଗ୍ରହରେ ସେମାନଙ୍କ ପାଖକୁ ଆପଣ ଏକୁଟିଆ ଯିବା ଉଚିତ ନୁହେଁ । ଏହା ମୁଁ ପ୍ରେମର ବଶ ହୋଇ କହୁଛି । ଏହା ତ ମୁଁ ଜାଣେ ଯେ ଆପଣଙ୍କ ଆଖିର ଗ୍ରହାଣିରେ ତ୍ରିଲୋକର ସଂହାର ହୋଇଯାଇ ପାରିବ । ମୋର ପାଣ୍ଡବଙ୍କଠାରେ ଯେତିକି ପ୍ରେମ, ତାହାଠାରୁ ଅଧିକ ଆପଣଙ୍କ ଉପରେ । ପ୍ରେମ-ସମ୍ମାନ ଓ ସୌହାର୍ଦ୍ଦ୍ୟ ଦୃଷ୍ଟିରୁ ମୁଁ ଏସବୁ କହୁଛି । ଆଉ କ'ଣ କହିବି ଆପଣ ତ ଅନ୍ତରାତ୍ମା ଅଟନ୍ତି ।

ଭଗବାନ ଶ୍ରୀକୃଷ୍ଣ କହିଲେ—ତୁମ ପରି ପ୍ରେମୀ ମିତ୍ର ମୋତେ ଯେପରି କଥା କହିବା ଉଚିତ, ସେପରି କହିଛ । ମୁଁ ଦୁର୍ଯ୍ୟୋଧନକୁ ଜାଣେ । ପରନ୍ତୁ ଏହି ଯେଉଁ କ୍ଷତ୍ରିୟମାନଙ୍କର ସଂହାର ହେବାର ଅଛି, ସେଥିରେ ନିଜ ଆତ୍ମ,

ସଚ୍ଚା ହୃଦୟରେ ଏକ ଚେଷ୍ଟା ହେବା ଉଚିତ ଯେ ଏହି ମହାସଂହାର କୌଣସି ପ୍ରକାର ବନ୍ଦ ହୋଇଯାଉ । ଏହି ବିପତ୍ତିର ସବୁଠାରୁ ମନ୍ଦ ପରିଣାମ କୌରବମାନଙ୍କୁ ହିଁ ଭୋଗିବାକୁ ପଡ଼ିବ । ସେମାନେ ଏହି କଥା ଜାଣି ମଧ୍ୟ ଅଭିମାନରେ ମାନୁ ନାହାନ୍ତି । ସେମାନଙ୍କୁ ବୁଝାଇବା ପାଇଁ ମୁଁ ଆସିଛି । ନୀତିଶାସ୍ତ୍ରର ସିଦ୍ଧାନ୍ତ ଏହି ଯେ ଯଦି ଆପଣଙ୍କର ମିତ୍ର କୌଣସି ଅକାର୍ଯ୍ୟ କରିବାକୁ ଯାଉଥାଏ ତେବେ ଯେତେଦୂର ପାର ତାର ଚୁଟି ଧରି ସେହି ଅକାର୍ଯ୍ୟରୁ ଲେଉଟାଇ ଆଣିବା ଉଚିତ । ମୁଁ ନିର୍ମଳ ହୃଦୟରେ କହୁଛି, ବିଦୁର ! ମୋର ହାର୍ଦ୍ଦିକ ଅଭିଳାଷ ଏହି ଯେ କୌରବ ଓ ପାଣ୍ଡବ ଦୁହିଁଙ୍କର କଲ୍ୟାଣ ହେଉ । ମୁଁ ସମାନରୂପରେ ଦୁହିଁଙ୍କର ହିତ ଚାହେଁ । ଦୁର୍ଯ୍ୟୋଧନକୁ ହିତ କଥା କହିବାବେଳେ ସେ ଯଦି ମୋତେ ଅବିଶ୍ୱାସ କରିବ ଏବଂ ମୋ ଉପରେ ଆଶଙ୍କା କରିବ ତେବେ ଆଉ କ'ଣ କରିବା । ମୁଁ ନିଜ କର୍ତ୍ତବ୍ୟ ପୂରା କରି ପ୍ରସନ୍ନ ହେବି ଏବଂ ଋଣମୁକ୍ତ ମଧ୍ୟ ହୋଇଯିବି । କେହି ମୋ ଉପରେ ଲାଞ୍ଛନା ଲଗାଇ ପାରିବେ ନାହିଁ ଯେ ଶ୍ରୀକୃଷ୍ଣ ସନ୍ଧି ପାଇଁ ଚେଷ୍ଟା କରି ନାହାନ୍ତି । ଯଦି ସେମାନେ ମୋର ଅନିଷ୍ଟ କରିବାକୁ ଚାହିଁବେ ତେବେ ତୁମେ ନିଶ୍ଚିତ ଭାବେ ଜାଣ ଯେ କୌଣସି ଶକ୍ତି ମୋ ଆଗରେ ତିଷ୍ଠି ପାରିବ ନାହିଁ ।' କଥା ହେଉଁ ହେଉଁ ରାତି ପାହିଗଲା ।

ନିତ୍ୟକର୍ମ ଶେଷକରି ଦୁର୍ଯ୍ୟୋଧନ ଆଦି ସମସ୍ତେ ଭଗବାନ ଶ୍ରୀକୃଷ୍ଣଙ୍କ ପାଖକୁ ବିଦୁର ଘରକୁ ଆସିଲେ । ସେମାନେ ଶ୍ରୀକୃଷ୍ଣଙ୍କୁ ସଭାକୁ ଯିବାକୁ ପ୍ରାର୍ଥନା କଲେ । ଭଗବାନ୍ ଶ୍ରୀକୃଷ୍ଣ ସଭାକୁ ଗଲେ । ସେଠାରେ ସେ ସନ୍ଧିର ପ୍ରସ୍ତାବ ଦେଲେ । ପରଶୁରାମ, ନାରଦ, ଭୀଷ୍ମପିତାମହ ସମସ୍ତେ ତାହାର ସମର୍ଥନ ଓ ଅନୁମୋଦନ କଲେ । ସମସ୍ତେ ଅଲଗା ଅଲଗା ଦୁର୍ଯ୍ୟୋଧନକୁ ବୁଝାଇଲେ ମଧ୍ୟ ସେ କାହାରି କଥା ଶୁଣି ନ ଥିଲା । ଓଲଟି ଶ୍ରୀକୃଷ୍ଣଙ୍କୁ କଏଦୀ କରିବାକୁ ବିଚାର କଲା । ସେ ଧୃତରାଷ୍ଟ୍ରଙ୍କ କହିବା ପରେ ମଧ୍ୟ ନ ମାନିଲାବେଳେ ବିଦୁର ବଡ଼ ଜୋରରେ ଦୁର୍ଯ୍ୟୋଧନକୁ ଗାଳି ଦେଲେ ।

ବିଦୁର କହିଲେ—ଦୁର୍ଯ୍ୟୋଧନ ! ତୁମେ ଶ୍ରୀକୃଷ୍ଣଙ୍କ ମହିମା ଜାଣିନା । ତୁମପରି ବାନରେନ୍ଦ୍ର ଦ୍ୱିବିଦ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଧରିବାକୁ ଚାହୁଁଥିଲା । ସେ ତୁମଠାରୁ କମ୍ ବଳୁଆ ନ ଥିଲା, କିନ୍ତୁ ସେ ମଧ୍ୟ କିଛି କରି ପାରିଲା

ନାହିଁ। ସେ ମରିଗଲା। ନରକାସୁର ନିଜର ସମଗ୍ର ସେନାଙ୍କ ସହିତ ଶ୍ରୀକୃଷ୍ଣଙ୍କୁ ଧରି ପାରିଲା ନାହିଁ, ବରଂ ସେ ଶ୍ରୀକୃଷ୍ଣଙ୍କ ହାତରେ ମଲା ଏବଂ ତାକୁ ମାରି ଶ୍ରୀକୃଷ୍ଣ ହଜାର ହଜାର କନ୍ୟାଙ୍କୁ ଉଦ୍ଧାର କଲେ। ନିର୍ମୋଚନ ନାମକ ନଗରରେ ଶ୍ରୀକୃଷ୍ଣ ଛଅ ହଜାର ଦୈତ୍ୟଙ୍କୁ କଏଦୀ କରିଦେଲେ। ସେମାନେ ତାଙ୍କୁ ଧରି ପାରିଲେ ନାହିଁ । ପିଲାଦିନେ ସେ ପୂତନା, ବକାସୁର, ଅରିଷ୍ଟାସୁର, ଧେନୁକାସୁରକୁ ମାରିଥିଲେ ଏବଂ ଗୋଧନର ରକ୍ଷା ପାଇଁ ସାତଦିନ ପର୍ଯ୍ୟନ୍ତ ଗୋବର୍ଦ୍ଧନ ପର୍ବତକୁ ନିଜ ଅଙ୍ଗୁଳିର ଅଗ୍ରଭାଗରେ ଉଠାଇ ରଖିଥିଲେ। କେଶୀ, ଚାଣୂର, କଂସ, ଜରାସଂଧ, ଦନ୍ତବକ୍ର, ଶିଶୁପାଳ ଓ ବାଣ ତାଙ୍କ ଆଗରେ ଠିଆହୋଇ ପାରିଲେ ନାହିଁ। ବରୁଣ, ଅଗ୍ନି ଓ ଇନ୍ଦ୍ର ତାଙ୍କଦ୍ୱାରା ପରାଜିତ ହୋଇଗଲେ। ସେ ସାକ୍ଷାତ୍ ବିଷ୍ଣୁ। ସେ ସମୁଦ୍ରରେ ଶୟନ କରିଥିବାବେଳେ ମଧୁ ଓ କୈଟଭ ଦୈତ୍ୟଙ୍କୁ ମାରିଥିଲେ; ଦୁଷ୍ଟଙ୍କୁ ମାରିବା ପାଇଁ ଅବତାର ନେଇ ସେ କେତେବାର ହୟଗ୍ରୀବ ଆଦିଙ୍କୁ ବଧ କଲେ। ସେ କାରଣ, କରଣ ଓ କାର୍ଯ୍ୟର ପରେ। କର୍ତ୍ତା ଓ ଅକର୍ତ୍ତା ଦୁହେଁ ତାଙ୍କରି ରୂପ। ସେ ସତ୍ୟସଂକଳ୍ପ ଅଟନ୍ତି। ସେ ଯେପରି ଚାହିଁବେ ସେପରି ହେବ। ଦୁର୍ଯ୍ୟୋଧନ ! ତୁ ଶ୍ରୀକୃଷ୍ଣଙ୍କୁ ଅପମାନ କରିବାକୁ ଚାହୁଁଛୁ, ଯେପରି ପତଙ୍ଗ ନିଆଁରେ ଡେଇଁ ନିଜର ଜୀବନ ଦିଏ, ସେପରି ତୁ ନିଜର ପରାମର୍ଶକାରୀଙ୍କ ସହ ଭସ୍ମ ହୋଇଯିବୁ।'

ବିଦୁର ଏହି ପ୍ରକାର ଭଗବାନ ଶ୍ରୀକୃଷ୍ଣଙ୍କ ମହିମା ଗାନ କଲାବେଳେ ସମସ୍ତେ ଭୟରେ ଥରିଗଲେ। ଶ୍ରୀକୃଷ୍ଣ ମଧ୍ୟ ହସି ହସି ନିଜର ବିରାଟ ରୂପ ଦେଖାଇ ଦେଲେ। ସମସ୍ତ ଋଷି ମହର୍ଷି ସେଠାରୁ ଚାଲିଗଲେ ଏବଂ ଭଗବାନ୍ ମଧ୍ୟ ରଥ ଉପରେ ବସି ପାଣ୍ଡବମାନଙ୍କ ପାଖରେ ଯାଇ ପହଞ୍ଚିଲେ।

ବିଦୁର କୁନ୍ତୀଙ୍କ ପାଖକୁ ଯାଇ ବଡ଼ ଚିନ୍ତା ପ୍ରକଟ କଲେ ଏବଂ କହିଲେ ବର୍ତ୍ତମାନ ଯୁଦ୍ଧ ନ ହୋଇ ରହିପାରିବ ନାହିଁ । ଏହି ଅଧର୍ମୀମାନେ ଧର୍ମରାଜ ଯୁଧିଷ୍ଠିରଙ୍କୁ ଯୁଦ୍ଧରେ ଲଗାଇ ଦେଲେ । ଧର୍ମଙ୍କ ସଙ୍ଗରେ ଲଢ଼ି ଏହି ଅଧର୍ମୀମାନେ କେଭେ ବିଜୟ ପାଇ ପାରିବେ ନାହିଁ । ଏବେ କୁରୁବଂଶର ବିନାଶ ହୋଇଯିବ । ଏହି ଚିନ୍ତାରେ ରାତିରେ ମୋତେ ନିଦ ହେଉନାହିଁ ଏବଂ ଦିନରେ ଶାନ୍ତି ଲାଗୁନାହିଁ । ଭଗବାନଙ୍କ ଏହି ଲୀଳା, ଯାହା ହେବ ଠିକ୍ ହେବ । କୁନ୍ତୀ ଯୁଦ୍ଧ ହେବାର ନିର୍ଣ୍ଣୟ ଜାଣି କର୍ଣ୍ଣଙ୍କୁ

ନିଜ ପକ୍ଷକୁ ଆଣିବାପାଇଁ ଚେଷ୍ଟା କଲେ କିନ୍ତୁ ସଫଳ ହୋଇ ନଥିଲେ । ଶେଷରେ ଯୁଦ୍ଧ ହେଲା । ଯୁଦ୍ଧରେ ବିଦୁର ସର୍ବଥା ତଟସ୍ଥ ରହିଲେ, ସେ କାହା ପକ୍ଷରେ କୌଣସି କାମ କରି ନଥିଲେ ।

❀❀❀

## (୬)

ଶ୍ରୀକୃଷ୍ଣଙ୍କ ପ୍ରେମ ତ ପରମ ଧର୍ମ, ସେହି ପ୍ରେମ ପାଇବା ପାଇଁ କରାଯାଉଥିବା ସତ୍‌ସଙ୍ଗ, ଭଜନ ଓ ତପସ୍ୟା ମଧ୍ୟ ପରମ ଧର୍ମ । ଧର୍ମମୟ ଜୀବନରେ ଅଥବା ଧର୍ମ ଜୀବନରେ ଏହାର ସ୍ଥାନ ପ୍ରଧାନ । ସତ୍‌ସଙ୍ଗରେ ଭଗବାନଙ୍କ ସ୍ୱରୂପ, ଗୁଣ, ଲୀଳା ଆଦିର ଶ୍ରବଣ ହୁଏ । ଭଜନରେ ତାଙ୍କର ସ୍ୱରୂପ, ତତ୍ତ୍ୱ, ମହତ୍ତ୍ୱ, ପ୍ରଭାବ, ନାମ, ରୂପ ଏବଂ ଗୁଣର ସ୍ମରଣ ହୁଏ । ତପସ୍ୟାରେ ଶାରୀରିକ ଓ ମାନସିକ ଦୋଷଗୁଡ଼ିକର ନିରାକରଣ ହୁଏ ଏବଂ ଏହି ପ୍ରକାର ଅନୁଷ୍ଠାନ ଦ୍ୱାରା ଭଗବାନଙ୍କ ପ୍ରେମର ପ୍ରାପ୍ତି, ଭଗବାନଙ୍କ ପ୍ରାପ୍ତି ଅଥବା ନିଜ ସ୍ୱରୂପର ସାକ୍ଷାତ୍‌କାର ହୁଏ । ଧର୍ମ ଯେତେବେଳେ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୁଏ ଅଥବା ଧର୍ମ ମୂର୍ତ୍ତିମାନ ହେବାବେଳେ ଏ କଥା ଅବଶ୍ୟ ହୁଏ । ବିଦୁରଙ୍କ ଜୀବନରେ ଏହି ସବୁ କଥାର ପୂର୍ଣ୍ଣତା ଦେଖାଯାଏ ।

ଶ୍ରୀମଦ୍‌ଭାଗବତ ଅନୁସାରେ ମହାଭାରତ ଯୁଦ୍ଧ ସମୟରେ ବିଦୁର ସେଠାରେ ଉପସ୍ଥିତ ନ ଥିଲେ । ଯୁଦ୍ଧ ହେବାର ନିର୍ଣ୍ଣୟ ହୋଇଗଲା, ପରେ ସନ୍ଧି ହେବାର ସମସ୍ତ ଚର୍ଚ୍ଚା ବିଫଳ ହୋଇଗଲା ଏବଂ ଶ୍ରୀକୃଷ୍ଣ ଲେଉଟି ଗଲେ; ବିଦୁର ଚିନ୍ତା କଲେ ଏବେ ନିଜର ଆଖି ଆଗରେ କୁରୁକୁଳ ସଂହାର ଦେଖିବା ଉଚିତ ନୁହେଁ । ସେ ସର୍ବସ୍ୱ ତ୍ୟାଗକରି ଘରୁ ବାହାରି ପଡ଼ିଲେ ଏବଂ ଅନେକ ତୀର୍ଥ ଭ୍ରମଣ କରିବାକୁ ଲାଗିଲେ । ସେ କୌଣସି ଆଶ୍ରମର ଚିହ୍ନ ଧାରଣ କରି ନ ଥିଲେ । ସେ କେବେ ଗୋଟିଏ ବେଶରେ ରହୁଥିଲେ ତ ପୁଣି କେବେ ଅନ୍ୟ ବେଶରେ । ନଦୀମାନଙ୍କରେ ତ୍ରିକାଳ ସ୍ନାନ କରୁଥିଲେ, ନିରନ୍ତର ଭଗବାନଙ୍କର ସ୍ମରଣ କରୁଥିଲେ ଏବଂ ଭଗବାନଙ୍କୁ ପ୍ରସନ୍ନ କରିବା ଭଳି ବ୍ରତ କରୁଥିଲେ । ଏହି ପ୍ରକାର ତୀର୍ଥମାନଙ୍କରେ ଭ୍ରମଣ କରୁ କରୁ ତାଙ୍କର ବହୁଦିନ ବିତିଗଲା ଏବଂ ସେ ପ୍ରଭାସ କ୍ଷେତ୍ରରେ ପହଞ୍ଚିଲେ । ସେଠାରେ ତାଙ୍କୁ ମହାଭାରତ ଯୁଦ୍ଧର ପରିଣାମ ଜଣା ପଡ଼ିଲା । ସେ ସେହି ଆଡ଼େ ଯାତ୍ରା ଆରମ୍ଭ କରିଦେଲେ ।

ସେ ଯମୁନା ତୀରରେ ପହଞ୍ଚିବା ସମୟରେ ମହାଭାଗବତ ଉଦ୍ଧବଙ୍କର ଦର୍ଶନ ହେଲା । ଉଦ୍ଧବଙ୍କୁ ସେ ବହୁତ ପ୍ରଶ୍ନ କଲେ ଏବଂ ଉଦ୍ଧବ ପ୍ରେମ ଗଦ୍‌ଗଦ ହୋଇ ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା ଶୁଣାଇଲେ । ଜନ୍ମରୁ ଆରମ୍ଭ କରି ମଥୁରା ଯାତ୍ରା, ଦ୍ୱାରିକା-ଗମନ, ଭାରତୀୟ ଯୁଦ୍ଧ, ଯୁଧିଷ୍ଠିରଙ୍କ ରାଜ୍ୟ ଏବଂ ତାଙ୍କର ଅଶ୍ୱମେଧ ଯଜ୍ଞ ପର୍ଯ୍ୟନ୍ତ ବୃତ୍ତାନ୍ତ ଶୁଣାଇଲେ । ଉଦ୍ଧବ ଭଗବାନଙ୍କର ସ୍ୱଧାମ ଗମନ କଥା କହିବାବେଳେ ବିଦୁର ବ୍ୟାକୁଳ ହୋଇଗଲେ । ସେ ଚିନ୍ତା କଲେ, ଆମରି ମଧ୍ୟରେ ଶ୍ରୀକୃଷ୍ଣ ଆସିଲେ, ଆମ ସହିତ ମିଶିଲେ, ଆମ ସହିତ ମିତ୍ରତା କଲେ ଏବଂ ଆମେ ତାଙ୍କର ସନ୍ନିଧି, ତାଙ୍କର ଆଳାପ ଏବଂ ତାଙ୍କରି କୃପାରୁ ଯେତିକି ଲାଭ ଉଠାଇବା କଥା ସେତିକି ଉଠାଇପାରିଲେ ନାହିଁ ଏବଂ ସେ ଚାଲିଗଲେ, ଏହା କେତେ ଦୁଃଖର କଥା ।

ଉଦ୍ଧବ ଭଗବାନଙ୍କ ଜ୍ଞାନୋପଦେଶର ଚର୍ଚ୍ଚା କଲେ । ବିଦୁର ସେହି ଜ୍ଞାନ ଶ୍ରବଣ କରିବାର ଇଚ୍ଛା ପ୍ରକଟ କଲେ । ତେଣୁ ଉଦ୍ଧବ କହିଲେ— "ଭଗବାନ ଉପଦେଶ ଦେବା ସମୟରେ ଆପଣଙ୍କ କଥା ସ୍ମରଣ କରିଥିଲେ । ସେତିକିବେଳେ ମୈତ୍ରେୟ ଋଷି ସେଠାରେ ଉପସ୍ଥିତ ଥିଲେ । ଭଗବାନ କହିଲେ—ଯେଉଁ ଗୁହ୍ୟତମ ଜ୍ଞାନର ଉପଦେଶ ମୁଁ ତୁମ୍ଭଙ୍କୁ କରୁଛି, ତାହା ମୈତ୍ରେୟ ବିଦୁରଙ୍କୁ ଶୁଣାଇବେ । ଏଣୁ ଆପଣ ଭଗବାନଙ୍କ ଦ୍ୱାରା କରାଯାଇଥିବା ଜ୍ଞାନର ଉପଦେଶ ମୈତ୍ରେୟ ଋଷିଙ୍କ ଠାରୁ ଶୁଣିବେ ।" ଭଗବାନ ଉପଦେଶ ପାଇଁ ମୈତ୍ରେୟଙ୍କୁ ଆଜ୍ଞା ଦେଇଥିବାର ଶୁଣି ବିଦୁର ବହୁତ ପ୍ରସନ୍ନ ହେଲେ, ତାଙ୍କର ହୃଦୟ ପ୍ରେମ, ଶ୍ରଦ୍ଧା ଓ ଆନନ୍ଦରେ ପୂରିଗଲା । ସେଠାରୁ ସେ ମୈତ୍ରେୟ ଋଷିଙ୍କ ନିକଟକୁ ଯିବାପାଇଁ ହରିଦ୍ୱାରକୁ ଯାତ୍ରା କଲେ ।

ହରିଦ୍ୱାରରେ ପହଞ୍ଚି ବିଦୁର ମୈତ୍ରେୟ ଋଷିଙ୍କ ପାଖକୁ ଗଲେ ଏବଂ ପ୍ରଣାମ, ସେବା କରି ସେ ମୈତ୍ରେୟଙ୍କ ଠାରୁ ଭଗବତ୍‌ତତ୍ତ୍ୱ ସମ୍ବନ୍ଧରେ ଭଗବାନଙ୍କ ଦ୍ୱାରା ବତାଇଥିବା ଜ୍ଞାନର ଶିକ୍ଷା ଗ୍ରହଣ କରିବାକୁ ଲାଗିଲେ । ଭାଗବତରେ ତୃତୀୟ ଓ ଚତୁର୍ଥ ସ୍କନ୍ଧରେ ମୈତ୍ରେୟ ବିଦୁରଙ୍କୁ କହିଛନ୍ତି । ସେଥିରେ ଭଗବତ୍ ପ୍ରେମ, ଭଗବତ୍‌ତତ୍ତ୍ୱଜ୍ଞାନ ଏବଂ କର୍ମର ଜଟିଳ ଗ୍ରନ୍ଥିମାନଙ୍କ ରହସ୍ୟ କି ପ୍ରକାର ଖୋଲି ଦିଆଯାଇଛି ତାହା ମୂଳଗ୍ରନ୍ଥ

ଦେଖିଲେ ଶ୍ରଦ୍ଧାଳୁମାନଙ୍କୁ ଜଣା ପଡ଼ିଯାଇ ପାରେ । ତାହାର ବିସ୍ତାର ପାଇଁ ଏ ସ୍ଥାନ ନୁହେଁ ଏବଂ ଯେତେ ବିସ୍ତାର କଲେ ମଧ୍ୟ ସେହି ଉପଦେଶମାନଙ୍କର ବର୍ଣ୍ଣନା ଠିକ୍ ଠିକ୍ ଭାବେ ହୋଇ ପାରିବ ନାହିଁ ।

ମୈତ୍ରେୟ ଋଷି ବିଦୁରଙ୍କ ବହୁତ ପ୍ରଶ୍ନର ସମାଧାନ କରିବା ପରେ ବିଦୁର ବିଚାର କଲେ ଯେ ଏହି ପ୍ରଶ୍ନରେ କ'ଣ ଅଛି। ଏହାର ଶେଷ କେବେ ହୋଇ ପାରିବ ନାହିଁ, ସବୁର ସାର ହେଲା ଭଗବାନଙ୍କର ଭଜନ। ସେ ଭଜନରେ ଲାଗିଗଲେ ଏବଂ ମୈତ୍ରେୟଙ୍କ ଅନୁମତି ନେଇ ହସ୍ତିନାପୁରକୁ ଫେରି ଆସିଲେ। ସେ ତ ଧର୍ମର ଜ୍ଞାନ ସ୍ୱରୂପ ହିଁ ଥିଲେ । ତାଙ୍କୁ ଜାଣିବା ପାଇଁ କ'ଣ ଆଉ ଆବଶ୍ୟକତା ଥିଲା ! ପୁଣି ମୈତ୍ରେୟଙ୍କଠାରୁ ଯେଉଁ ଆତ୍ମଜ୍ଞାନ ଲାଭ କଲେ, ପ୍ରଶ୍ନ ସମାଧାନ କଲେ, ତାହା ଲୋକ-ସଂଗ୍ରହ ପାଇଁ ଏକ ଲୀଳା ମାତ୍ର। ହସ୍ତିନାପୁରରେ ବିଦୁର ପହଞ୍ଚିବା ପରେ ପାଣ୍ଡବମାନେ ଏବଂ ପ୍ରଜାମାନେ ଅତି ଆନନ୍ଦିତ ହେଲେ। ସେମାନେ ବିଦୁରଙ୍କୁ ତୀର୍ଥଯାତ୍ରା ସମାଚାର ପଚାରିଲେ। ବିଦୁର ବହୁତ କଥା ସେମାନଙ୍କୁ କହିଲେ, ପରନ୍ତୁ ଶ୍ରୀକୃଷ୍ଣଙ୍କର ସ୍ୱଧାମ ଗମନ କଥା ସେମାନଙ୍କୁ କହି ନ ଥିଲେ। ଏବେ ଅର୍ଜ୍ଜୁନ ଦ୍ୱାରିକାରୁ ଫେରି ନ ଥିଲେ, ଯୁଧିଷ୍ଠିରଙ୍କୁ ଦ୍ୱାରିକା ସମ୍ବାଦ କିଛି ଜଣା ନ ଥିଲା ।

ବିଦୁର ଦେଖିଲେ ଶ୍ରୀକୃଷ୍ଣ ଚାଲିଗଲେ । ସମାଚାର ପାଇବା ମାତ୍ରେ ପାଣ୍ଡବମାନେ ଚାଲିଯିବେ । ବର୍ତ୍ତମାନ ଧୃତରାଷ୍ଟ୍ରଙ୍କର ରକ୍ଷା କରିବା ଉଚିତ । ସେ ତାଙ୍କ ସମସ୍ତ ଜୀବନ ସାଂସାରିକ କର୍ମରେ ବିତାଇ ଦେଲେ । ଏବେ ଶେଷ ସମୟରେ ତ ତାଙ୍କଦ୍ୱାରା କିଛି ତପସ୍ୟା, କିଛି ଭଗବାନଙ୍କର ଭଜନ ହେବା ଉଚିତ । ବିଦୁର ଧୃତରାଷ୍ଟ୍ରଙ୍କୁ ସବୁକଥା ବୁଝାଇଦେଲେ । ଧୃତରାଷ୍ଟ୍ର ତାଙ୍କ କଥା ମାନିଗଲେ ଏବଂ ସେ ବିଦୁରଙ୍କ ସାଙ୍ଗରେ ଘରୁ ବାହାରି ପଡ଼ିଲେ । ଗାନ୍ଧାରୀ ମଧ୍ୟ ତାଙ୍କର ଅନୁସରଣ କଲେ । ସେମାନଙ୍କର ସେବା କରିବା ପାଇଁ ଧର୍ମଶୀଳା କୁନ୍ତୀ ମଧ୍ୟ ପୁତ୍ରମାନଙ୍କୁ ଛାଡ଼ି ସେମାନଙ୍କ ସଙ୍ଗରେ ଗଲେ । ସେମାନେ ସପ୍ତସରୋବର (ହିମାଳୟ) ନିକଟକୁ ଯାଇ ଭଗବାନଙ୍କର ଭଜନ କରିବାକୁ ଲାଗିଲେ ଏବଂ ହସ୍ତିନାପୁରରେ ଯୁଧିଷ୍ଠିର ସେମାନଙ୍କର ଅନ୍ୱେଷଣ କରିବାରେ ଲାଗିଲେ ।

ମହାଭାରତରେ ଅଛି ଯେ ଯୁଧିଷ୍ଠିର ନିଜର ଭାଇମାନଙ୍କ ସହିତ

ଧୃତରାଷ୍ଟ୍ରଙ୍କ ପାଖକୁ ବଣକୁ ଯାଇ ବିଦୁରଙ୍କ କୁଶଳ ପଚ୍ଚାରିଲେ, ତେଣୁ ଧୃତରାଷ୍ଟ୍ର କହିଲେ—'ପୁତ୍ର ! ପରମ ଜ୍ଞାନୀ ବିଦୁର ଏହି ତପୋବନରେ କେଉଁଠାରେ ରହୁଛନ୍ତି । ସେ ଅନ୍ନ ଖାଉ ନାହାନ୍ତି, କେବଳ ବାୟୁ ଭକ୍ଷଣ କରି ରହିଛନ୍ତି । ଘୋର ତପଯୋଗୁ ଦୁର୍ବଳ ହୋଇ ଗଲେଣି । ବଡ଼ ବଡ଼ ବିଦ୍ୱାନ ତାଙ୍କ ଦର୍ଶନ ପାଇବା ପାଇଁ ଏଇ ଜଙ୍ଗଲକୁ ଆସୁଛନ୍ତି ।' ଏହି ଭଳି କଥାବାର୍ତ୍ତା ଚ୍ଚାଲିଥିଲା । ଏହି ସମୟରେ ଅଳ୍ପ ଦୂରରେ ବିଦୁରଙ୍କର ଦର୍ଶନ ହେଲା । ତାଙ୍କ ଶରୀରରେ ଧୂଳି ଲାଗିଥିଲା । ଆଶ୍ରମ ଦେଖି ବିଦୁର ହଠାତ୍ ପଛକୁ ଲେଉଟି ଗଲେ । ବିଦୁରଙ୍କୁ ଯିବାର ଦେଖି ଧର୍ମରାଜ ଯୁଧିଷ୍ଠିର ତାଙ୍କର ଅନୁସରଣ କଲେ । ବିଦୁର କେବେ ଯୁଧିଷ୍ଠିରଙ୍କୁ ଦେଖୁଥିଲେ ପୁଣି ଅଦୃଶ୍ୟ ହୋଇ ଯାଉଥିଲେ । ଯୁଧିଷ୍ଠିର ବଡ଼ ପାଟିରେ ଡାକିଲେ—'ମହାତ୍ମନ୍ ! ମୁଁ ଆପଣଙ୍କ ପ୍ରିୟ ଯୁଧିଷ୍ଠିର । ଆପଣ ମୋତେ ଦର୍ଶନ ଦିଅନ୍ତୁ ।' ପରନ୍ତୁ ବିଦୁର ଜୋରରେ ଆଗକୁ ଚ୍ଚାଲି ଯାଉଥିଲେ ।

ନିର୍ଜନ ବଣକୁ ଯାଇ ବିଦୁର ଗୋଟିଏ ଗଛର ଆଶ୍ରୟରେ ଠିଆ ହୋଇଗଲେ । ଯୁଧିଷ୍ଠିର ତାଙ୍କ ନିକଟକୁ ଯାଇ କହିଲେ—'ମହାରାଜ ! ମୁଁ ଆପଣଙ୍କ ପ୍ରିୟ ଯୁଧିଷ୍ଠିର । ଆପଣଙ୍କ ଦର୍ଶନ ପାଇଁ ଆସିଛି ।' ବିଦୁର କିଛି କହିଲେ ନାହିଁ । ସେ ଧର୍ମରାଜଙ୍କ ଦୃଷ୍ଟିରେ ନିଜ ଦୃଷ୍ଟି, ଇନ୍ଦ୍ରିୟମାନଙ୍କରେ ଇନ୍ଦ୍ରିୟମାନ, ପ୍ରାଣମାନଙ୍କରେ ପ୍ରାଣ ଏବଂ ଆତ୍ମାରେ ଆତ୍ମା ମିଳାଇ ତାଙ୍କ ସହିତ ଏକତା ଅନୁଭବ କରି ନେଲେ । ସେ ନିଜ ସ୍ୱରୂପରେ ଲୀନ ହୋଇଗଲେ । କେବଳ ଧର୍ମ ହିଁ ଧର୍ମ, ଯୁଧିଷ୍ଠିର ହିଁ ଯୁଧିଷ୍ଠିର ରହିଗଲେ । ବିଦୁରଙ୍କ ଶରୀର ଗଛର ଆଶ୍ରୟରେ ଠିଆ ହୋଇ ରହିଗଲା ଏବଂ ଧର୍ମରାଜ ଯୁଧିଷ୍ଠିର ନିଜଠାରେ ବିଶେଷ ଶକ୍ତିର ଅନୁଭବ କଲେ । ସେ ବିଦୁରଙ୍କ ଶରୀର ଦାହ କରିବାକୁ ଯାଉଥିଲେ ଏହି ସମୟରେ ଆକାଶବାଣୀ ହେଲା 'ବିଦୁର ଯତି-ଧର୍ମ ପ୍ରାପ୍ତ ହୋଇଥିଲେ, ତାଙ୍କର ଶରୀରକୁ ଜଳାଅ ନାହିଁ ଏବଂ ତାଙ୍କ ପାଇଁ ଶୋକ କର ନାହିଁ ।' ଯୁଧିଷ୍ଠିର ଆଶ୍ରମକୁ ଚ୍ଚାଲିଆସିଲେ । ବିଦୁର ତ ଧର୍ମ ଥିଲେ, ସେ ଧର୍ମଙ୍କ ରୂପରେ ହିଁ ଲୟ ହୋଇଗଲେ । ଏହି ପ୍ରକାର ସେ ନିଜ ଲୀଳା ସମ୍ବରଣ କରି ନେଲେ ।

**ଧର୍ମ ଭଗବାନଙ୍କର ଜୟ !**